# ପଞ୍ଜାବର କଥା ଓ କାହାଣୀ

ସଂପାଦକ

**ହରଭଜନ ସିଂହ**

ଅନୁବାଦକ

**ବିଜୟ ପଟେଲ**



**ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ,**

**ନୂଆ ଦିଲ୍ଲୀ**

1987 (ଶକାବ୍ଦ 1908)



Rs 7·00

*Original Title* : KISSA PUNJAB
*Oriya Translation* : PUNJABAR KATHA O KAHANI

ଡାଇରେକ୍ଟର, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, A-5, ଗ୍ରୀନ୍ ପାର୍କ, ନୂଆ ଦିଲ୍ଲୀ—110016 କର୍ତ୍ତୃକ ପ୍ରକାଶିତ ଓ ଗ୍ରନ୍ଥମନ୍ଦିର, କଟକ-753002ରେ ମୁଦ୍ରିତ ।

# ଭୂମିକା

ନିଜ ପୃଥିବୀର ବାସ୍ତବତା ସହିତ ଘନିଷ୍ଠ ହୋଇ ରହିବା ହେଉଛି ପଂଜାବୀ ଭାଷା ଓ ପଂଜାବୀ ସଂସ୍କୃତିର ସଜିକ । ପଂଜାବୀ ଲୋକମାନେ ସଭ୍ୟତାର ନିତ୍ୟନୂତନ ଓ ଜଟିଳ ବ୍ୟାପ୍ତିକୁ ଆପଣାର କରିବା ନିମଂତେ ସବୁବେଳେ ଉଦ୍ୟତ ଥାଆଂତି ତାହା ସତ, କିଂତୁ ସେମାନେ କେବେହେଲେ ନିଜର ପୁରାତନ ଓ ସରଳ ଜୀବନ ପରିପାଟୀ ପ୍ରତି ବିମୁଖ ନୁହଂତି; ବରଂ ବିଶ୍ୱସ୍ତ । ଧର୍ମ ଓ କଳା ଉଭୟ କ୍ଷେତ୍ରରେ ଏହି ନିରାଡ଼ଂବରତାର ପ୍ରମାଣ ମିଳେ । ନା ପଂଜାବର ମାଟିରୁ ଅଂକୁରିତ ଧର୍ମ ଜଟିଳ, ନା ନୃତ୍ୟ ସଂଗୀତ । କବିତା ଓ ସ୍ଥାପତ୍ୟ କଳା ମଧ୍ୟ ଦୁର୍ବୋଧ ନୁହେଁ । ନବୀନକୁ କ୍ଷଣକେ ଆପଣାର କରି ନେଉଥିବା ପଂଜାବ ଏହି ସରଳତା ଯୋଠାରୁ ହିଁ ସ୍ଥିର ଓ ତା'ର ମୂଳଦୁଆ ନିଜର ପୁରାତନ ଓ ଗଭୀର ପରଂପରା ଉପରେ ସୁଦୃଢ଼ ହୋଇପାରିଛି ।

ନୂତନତା ଓ ପାରଂପାରିକତାର ଏହି ସହଜ ସଂମିଶ୍ରଣ ହିଁ ହେଉଛି ପଂଜାବୀ କଥା-ସାହିତ୍ୟର ବିଶେଷତ୍ୱ । ମଧ୍ୟଯୁଗୀୟ ପଂଜାବ ବିଦେଶୀ ଆକ୍ରମଣକାରୀମାନଂକଠାରୁ ଅନେକ କିଛି ଗ୍ରହଣ କରିଥିଲା । କିଂତୁ ନିଜର ସରଳତାର ପ୍ରଭାବରେ ତାକୁ ଏଭଳି ଭାବରେ ଆପଣା ଢଂଗରେ ଢାଳିଦେଇଛି ଯେ ଆଜି ତାହାର ପ୍ରକୃତ ରୂପ, ଦେଶୀ କି ବିଦେଶୀ, ଚିହ୍ନିବା ଦୁଃସାଧ୍ୟ । ଭାଷାକୁ ଅଂଡାଳିଲେ ଏସବୁ ବିଦେଶୀ ଶବ୍ଦ ଭଳି ମନେହୁଏ । ମନେହୁଏ କବିତାର ଏଇସବୁ ନମୁନା ବିଦେଶୀ ଆକ୍ରମଣକାରୀମାନଂକ ସହିତ ଅନୁପ୍ରବେଶ କରି ବୋଧହୁଏ ତାଂକ ସହିତ ପଂଜାବରେ ରହିଯାଇଛଂତି । କିଂତୁ ଧନ୍ୟ ପଂଜାବୀ କବିମାନଂକୁ ! ସେମାନେ ନିଜ ମାଟିରୁ ହିଁ ହୀର୍-ରାନ୍ଝା, ମିରଜା-ସାହିବାଁ, ସୋହନୀ-ମହୀବାଲ, ସସ୍ସୀ-ପୁନ୍ନୁ, ପୂରନ ଭଗତ ଓ ରାଜା ରସାଲୁ ଭଳି ଏମିତି କଥା ଓ କାହାଣୀମାନ ଗଢ଼ିଛଂତି ଯେ ସେଗୁଡ଼ିକୁ ବାଦ୍ ଦେଇ ପଂଜାବୀ କାବ୍ୟ-ପରଂପରାର କଳ୍ପନା ମଧ୍ୟ କରିବା ଅସଂଭବ । ପଂଜାବୀମାନେ ବିଦେଶୀମାନଂକୁ ମଧ୍ୟ ଅତି ଶ୍ରଦ୍ଧାରେ ନିଜ ପରିବାରର ବୋଲି ଗ୍ରହଣ କରିନିଅଂତି—ସୋହନୀ-ମହୀବାଲ ଓ ସସ୍ସୀ-ପୁନ୍ନୁର ନାୟକମାନଂକଠାରୁ ଏଇ କଥାର କିଞ୍ଚିତ୍ ଆଭାସ ମିଳେ । ଗୁଜରାଟର ଅନତିଦୂରରେ କୁମ୍ଭାରୁଣୀ ସୋହନୀର ପ୍ରେମ ପାଶରେ ବଂଧା ପଂଜାବର ମଇଁଷି ଚରାଉଥିବା ସୁଂଦର ରୂପବାନ୍ ମହୀବାଲ ମଧ୍ୟ-ଏସିଆର ରାଜବଂଶ ସହିତ ସଂପର୍କିତ ଥିଲା । ଏପରିଭାବରେ ସସ୍ସୀ ମଧ୍ୟ ଧୋବାଘରେ ବଡ଼ ହୋଇଥିଲା । କିଂତୁ ତା'ର ପ୍ରେମିକ ଥିଲା ବେଲୁଚିସ୍ଥାନରୁ ଆସିଥିବା ଜଣେ

ବିଦେଶୀ, ଯିଏ ଦୁର୍ଗମ ମରୁଭୂମି ଅତିକ୍ରମ କରି ଏଠାରେ ପହଂଚିଥିଲା । ସେଇଠାର ପ୍ରେମିକ ମୁରାଦ ମଧ୍ୟ ବେଲୁଚିସ୍ଥାନର ବାସିଂଦା ଥିଲା । ପଂଜାବୀ କବିମାନେ ନିଜର ହୃଦୟରେ ସ୍ଥାନ ଦେଇଥିବା ପ୍ରିୟ କାହାଣୀମାନଂକରେ ମଧ୍ୟ ବିଦେଶୀମାନଂକୁ ନାୟକର ସ୍ଥାନ ଦେଇଛଂତି । ଏହା ହିଁ ହେଉଛି ପଂଜାବୀ ଜୀବନ ଓ ପଂଜାବୀ କଳାର ଚମତ୍କାରିତା । ସବୁଠୁ ମଜାର କଥା ହେଉଛି ଏଇ ସବୁ କାହାଣୀମାନଂକରେ କେଉଁଠି ହେଲେ ଦେଶ ଓ ବିଦେଶ ମଧ୍ୟରେ ସଂଘର୍ଷ ନାହିଁ । ବିଦେଶୀ ବୋଲି କହି କୌଣସି ନାୟକକୁ ଅସ୍ୱୀକାର କରାଯାଏନି । ସସ୍ସୀର ପିତା ପୁନ୍ନୁ ସହିତ ଅତି ଆନଂଦରେ ନିଜର ଝିଅକୁ ବାହାଦେଇଥିଲେ । ଅଣପଂଜାବୀକୁ ସ୍ୱଭାବାନୁଯାୟୀ ନିଜ ଢାଂଚରେ ଗଢ଼ି ଦେବା ଓ ତାକୁ ନିଜ ପରିବାରର ଜଣେ ସଦସ୍ୟ ଭାବରେ ଗ୍ରହଣ କରିନେବା କେବଳ ପଂଜାବୀ କବିତା ଭିତରେ ସୀମିତ ନୁହେଁ । ଏହା ହେଉଛି ସମଗ୍ର ପଂଜାବୀ ଜୀବନର ବିଶେଷତ୍ୱ । ପଂଜାବୀ ଭାଷା, ପଂଜାବୀ ସ୍ଥାପତ୍ୟ-କଳା ଓ ପଂଜାବୀ ସଂଗୀତରେ ମଧ୍ୟ ଏଇ କଥାର ସ୍ପଷ୍ଟ ପ୍ରମାଣ ମିଳେ । ଏହା ହେଉଛି ପଂଜାବର ମୁକ୍ତ ଓ ଅନବରତ ବିକାଶଶୀଳ ପ୍ରକୃତିର ଅନନ୍ୟ ଗୁଣ ।

ପଂଜାବୀ କଥା-ସାହିତ୍ୟ ଯେ କେବଳ ବିଦେଶୀମାନଂକୁ ପଂଜାବୀ କରିଦେଇଛି ତା ନୁହେଁ; ବରଂ ଅନେକ ସ୍ଥାନରେ ପଂଜାବୀ ଯୁବକମାନଂକୁ ମଧ୍ୟ ବିଦେଶରେ ପ୍ରେମିକ ରୂପରେ ଦେଖିବାକୁ ମିଳେ । ପଂଜାବୀ କଥା-ସାହିତ୍ୟ ହେଉଛି ମଧ୍ୟଯୁଗୀୟ ସୃଷ୍ଟି—ଯେତେବେଳେ ରେଳ, ରାସ୍ତାଘାଟ ଓ ଜାହାଜ ଭଳି ଗମନାଗମନର ସୁବିଧା ନଥିଲା । ଯେତେବେଳେ ‘ପଚିଶ-ଶହେ କୋଶ’ ଓ ‘ନ ଶହ ମାଇଲ ଦୂର’ ଭିତରେ କିଛି ପ୍ରଭେଦ ନଥିଲା । ନଦୀ-ମାନଂକ ଉପରେ ପୋଲ ନଥିଲା । ଶ୍ରାବଣ ମାସରେ ନଦୀ ଅତିକ୍ରମ କରିବା ଯେମିତି କଷ୍ଟପ୍ରଦ ଥିଲା, ଜ୍ୟେଷ୍ଠ-ଆଷାଢ଼ରେ ମରୁଭୂମି ଅତିକ୍ରମ କରିବା ମଧ୍ୟ ସେଇଭଳି ଦୁଃସାଧ୍ୟ ଥିଲା : “ଜା ଧୀୟେ ରାବୀ, ନା କୋଈ ଆବୀ, ନା କୋଈ ଜାବୀ ।” (ଝିଅ, ରାବୀ ନଦୀ ଆର କୂଳକୁ ଚାଲିଯା, ନା ତୋ ପାଖକୁ କିଏ ଯାଇପାରିବ, ନା ସେ ପାଖରୁ କେହି ଆସିପାରିବ । ) ଏଇ ପ୍ରବଚନ ଶହ ଶହ ବର୍ଷଧରି ଲୋକଂକ ମୁହଁରେ ଶୁଣାଯାଉଥିଲା । ପ୍ରକୃତରେ ସାଧାରଣ ଲୋକଂକ ଧାରଣା ଅନୁଯାୟୀ ନଦୀର ଆରକୂଳ ହେଉଛି ଆମ ପାଇଁ ବିଦେଶ । ଏଇଭଳି ଜନଚେତନାର ପରିବେଶ ଭିତରେ ହୀର୍-ରାନ୍ଝାର କଥା ରୂପ ନେଇଥିଲା । ପଂଜାବୀ କଥା-ସାହିତ୍ୟର ସମସ୍ତ ନାୟକ ଯାତ୍ରୀ ଅବସ୍ଥାରେ ଦେଖାଯାଆନ୍ତି । ପଂଜାବର ପ୍ରେମଚେତନା ସହିତ ଯାଯାବର ଯାତ୍ରା ଅବସ୍ଥା ଗଭୀର ଭାବରେ ଜଡ଼ିତ । ଘରଦ୍ୱାରଠାରୁ ଅନେକ ଦୂରରେ ରାନ୍ଝା ଯେତେବେଳେ ହୀର୍‌କୁ ଯୋଗାବସ୍ଥାରେ ବାଡ଼ି ଧରି ଠିଆହୋଇଥିବାର ଦେଖିଲା ସେ କହିଥିଲା :

ରାନ୍ଝା ଆଖଦା ଏହି ଜହାନ ସୁପନା,
ମର ଜାବଣା ଈ ଦୈନାଁ ବାଲ୍ଲିୟେ ନୀ ।

ଚେରେ ଜଫ୍ଯେ ପିଅରଯ୍ଯୁଁ ହେ ଲଜମ,
ଆଫ୍ଯେ ଗଫ୍ଯେ ମୁସାଫର୍‌ ପାଲ୍ଯେ ନା ॥

ଯାତ୍ରା ଓ ପ୍ରେମକୁ ପରସ୍ପର ସହିତ ପ୍ରଗାଢ଼ ଭାବରେ ସଂପର୍କିତ କରି ବାଦଶାହ ପଂଜାବୀ ଆଚରଣର ଏଇ ଗଭୀର ସୁପ୍ତ ତତ୍ତ୍ୱ ଆଡ଼କୁ ଇଂଗିତ କରିଛଂତି । କେବଳ କାହାଣୀର ନାୟକ ନୁହେଁ; ପଂଜାବର ଜନନାୟକମାନେ ମଧ୍ୟ ନିଜ ଘରଠାରୁ ସଂପର୍କ ତୁଟାଇ ଦେଇ ପଂଜାବର ହୃଦୟରୁ ପ୍ରେମ ଓ ଆଦର ପାଇବାପାଇଁ ଯୋଗ୍ୟ ହୋଇପାରିଛଂତି । ପଂଜାବର ସର୍ବଶ୍ରେଷ୍ଠ ଜନନାୟକ ଗୁରୁ ନାନକଂକର ଉଦାହରଣ ଆମ ଆଖି ଆଗରେ ରହିଛି । ସେ ନିଜର କର୍ମବ୍ୟସ୍ତ ଜୀବନର ବେଶୀ ଅଂଶ ଘୂରିଆଡ଼େ ବୁଲି ବୁଲି କଟାଇଦେଇଥିଲେ । ପଂଜାବୀ ସଂସ୍କୃତି ଓ ସ୍ୱାଧୀନତା ପାଇଁ ସଂଗ୍ରାମରତ ଗୁରୁ ଗୋବିଂଦ ସିଂହ ମଧ୍ୟ ସମଗ୍ର ଜୀବନ —ଆନ୍ଦୋଳିତ ହେବାଦିନଠାରୁ ପ୍ରଜ୍ୱଳିତ ଜ୍ୟୋତି ନିର୍ବାପିତ ହେବା ପର୍ଯ୍ୟଂତ—ଆପଣାର ଜନ୍ମମାଟି ମାଖୋଠାରୁ ଦୂରରେ କଟାଇଥିଲେ । ଆଜି ମଧ୍ୟ ପଂଜାବୀ ମନ ବିଦେଶକୁ ଯାତ୍ରା କରିବା ପାଇଁ ମହତ୍ତ୍ୱ ଆକାଂକ୍ଷା ନେଇ ଅନାଇଁ ବସିଥାଏ । ବୋଧହୁଏ, ପଂଜାବୀ ପ୍ରତିଭା ଘର ଗ୍ରଣ୍ଡି ଦୂରକୁ ଗଲେ ଯାଇ ପ୍ରକୃତ ବିକାଶ ଲଭ କରେ । ଗ୍ରନ୍ଥ ଓ ପ୍ରେମକାହାଣୀର ଅନ୍ୟାନ୍ୟ ନାୟକମାନେ ନିଜ ଘରଠାରୁ ବହୁ ଦୂରରେ ରହି ନିଜର ଲୀଳା ଦେଖାଇଛଂତି । ରାଜା ରସାଲୁ ଓ ଦୁଲ୍ଲା ଭଟ୍ଟୀ ଆଦି ଭକ୍ତ ଓ ନିର୍ଭୀକ ନାୟକମାନେ ମଧ୍ୟ ସେଇ ପଥରେ ଘୂରିଥିବାର ଦେଖାଯାଏ । ପୂରନକୁ ନିଜ ବିମାତାର ହୀନ ଚରିତ୍ରର ଶିକାର ହୋଇ ଗୃହତ୍ୟାଗ କରିବାକୁ ପଡ଼ିଥିଲା । କିନ୍ତୁ ରାଜା ରସାଲୁ ନିଜ ଖୁସିରେ ଘରୁ ବାହାରିଯାଇଥିଲେ । ଏଇ ଦୁହିଂକର ସାଧୁସନ୍ନ୍ୟାସୀ ଭଳି ଜୀବନଯାପନ କରିବାର ସତ୍ତ୍ୱେ ଥିଲେ ମଧ୍ୟ ସେମାନଂକୁ ପ୍ରେମ ମିଳିଥିଲା । ରାଣୀ ସୁଂଦରୀ ପୂରନକୁ ପାଇବା ପାଇଁ ଚେଷ୍ଟା କରିଥିଲା । ସୁଂଦରୀ ଏଭଳି ଏକ ରାଜ୍ୟରେ ରାଜୁତି କରୁଥିଲା, ଯେଉଁଠି ନାରୀମାନେ ସର୍ବେସର୍ବା ଥିଲେ । ଏଥିରୁ ସ୍ପଷ୍ଟ ଜଣାପଡ଼େ ଯେ ଏହା ପଂଜାବ ବାହାରର କୌଣସି ଏକ ସ୍ଥାନ । ରାଜା ରସାଲୁ ସିଗକୋଟର ରାଜା ସିରକପର ନବଜାତ କନ୍ୟାକୁ ନିଜର ଅର୍ଦ୍ଧାଙ୍ଗିନୀ ରୂପରେ ସ୍ୱୀକାର କରିଥିଲେ । ଅନୁମାନ କରାଯାଉଛି ଯେ ସିରକପର ରାଜ୍ୟ ମଧ୍ୟ ପଂଜାବ ବାହାରେ ଥିଲା । ଦୁଲ୍ଲା ପଂଜାବରେ ଜନ୍ମ ହୋଇ ବଡ଼ ହୋଇଥିଲା । ତା'ର ସାରା ଜୀବନ ଏଇ ଭୂଇଁରେ ଅତିବାହିତ ହୋଇଥିଲା । କିଂତୁ ସେ ନିଜ ସକାଶେ ଏଭଳି ଏକ କାମ ବାଛିନେଇଥିଲା ଯେ ସେ ମୋଟେ ହେଲେ ଘରେ ରହିପାରୁନଥିଲା । ଆମର ନାୟକମାନେ କେବଳ ଯେ ଗୃହହୀନ ତାହା ନୁହେଁ, ସେମାନେ ନିଃସଂଗ ମଧ୍ୟ । ଜୀବନର ଯାଯାବର ଯାତ୍ରାପଥକୁ ଆମକୁ ଏକା ଏକା ଅତିକ୍ରମ କରିବାର ଅଛି । ଏଇ ମାର୍ଗରେ ଆମର କେହିହେଲେ ସାଥୀ ସହଯାତ୍ରୀ ନାହାଂତି । ଏହି ଗୃହଶୂନ୍ୟ, ସାଥୀହୀନ ଜୀବନରେ ପ୍ରବାସ ଭୂଇଁର ପ୍ରେମ-ଭାବନା ହିଁ ଆମର ଏକମାତ୍ର ସାହାରା । ଏଇ ପ୍ରେମ-ଭାବନା ଦୁଃଖ-ବେଦନାମୟ ମୁହୂର୍ତ୍ତରେ ଭଗବାନଂକ ଭଳି ଆମ ନିକଟରେ ପହଂଚିଯାଏ ।

ସାଲୂ କୌନ ସମେଟେ, ହୋ
ସ୍ୱସ୍ୱ ଗାଲ ଦେସେ, ହୋ

ସ୍ୱଚେ ଚୂସ୍ତ କୁଚ୍ଛୀ, ହୋ
ଜମୀଂ ଦାର୍ଗ ଲୁଟ୍ଟୀ, ହୋ

ଜମୀଂ ଦାର ସଦାଯେ, ହୋ
ଗିନ-ଗିନ ପୌଲେ ଲଯେ, ହୋ

ଏହା ହେଉଛି ଏକ ପ୍ରାମାଣିକ ଲୋକଗୀତ, ଯେଉଁଥିରେ କାହାଣୀର ସୂତାଖିଅ ଅଡ଼ୁଆ-ଚଡ଼ୁଆ ହୋଇଯାଇଛି । ଏହା ଦେଉଛି ଲୋକଗୀତର ଧର୍ମ । କାହାଣୀ ତ ଲୋକେ ଆଗରୁ ଜାଣିଥାଆନ୍ତି, ଲୋକକବି ତାକୁ ନିଜର ଇଚ୍ଛାନୁଯାୟୀ ରୂପ ଦିଏ । ସୁଂଦରୀ ମା-ଛେଉଣ୍ଡ ଥିଲା । ବାପର ସାନ୍ନିଧ୍ୟ ମଧ୍ୟ ତାକୁ ମିଳୁନଥିଲା । ତା'ର କକେଇ ଜମିଦାର ଥିଲା । ସମ୍ରାଟ ଆକବରଂକର ସେଇ ଅଂଚଳ ଦେଇ ଯିବାର ଥିଲା । ଜମିଦାରମାନେ ସ୍ଥିର କଲେ ଯେ ସମ୍ରାଟ୍ ଆଗରେ ସୁଂଦରୀକୁ ଭେଟି ଦିଆଯିବ । ଗାଁର ସବୁଠାରୁ ସୁଂଦର (ଲାଲ ପଟାକା) ଓ ସବୁଠାରୁ ଗରିବ (ସାଲୂପାଟା ଅର୍ଥାତ୍, ଚିରିଯାଇଥିବା ଉଢ଼ଣୀ) ଝିଅକୁ 'କେଉଁ ବିଚାରି' ଅବା ରକ୍ଷା କରିଥାଆନ୍ତା ? କଥାଟି ଦୁଲ୍ଲା ଭଟ୍ଟୀକୁ ଜଣାଇଦିଆଗଲା । ଦୁଲ୍ଲା ଦୀନ-ଦରିଦ୍ରଂକର ଶୁଭାକାଂକ୍ଷୀ ଥିଲା । ସେ ସାଂଗେ ସାଂଗେ ସୁଂଦରୀକୁ ନିଜ ଝିଅ ଭଳି ବାହା କରାଇଦେଲା । ତରବରରେ ହୋଇଥିବାରୁ ଭଲଭାବରେ ବିବାହର ଆୟୋଜନ ହୋଇପାରିନଥିଲା । ସେରେ ଚିନିରେ ବିବାହର ନିର୍ବନ୍ଧ କାର୍ଯ୍ୟ ସଂପନ୍ନ ହେଲା । କିଂତୁ ଦୁଲ୍ଲା 'ଚୂରି' କୁଟୁଥିବା ଜମିଦାରମାନଂକ ଉପରେ ଦାଉ ସାଧିଲା ଓ ତାଂକ ଅବସ୍ଥା ଦୟନୀୟ କରିପକାଇଲା ।

ଏଇଭଳି ଭାବରେ ପଂଜାବୀ ଲୋକନାୟକମାନେ ଲୋକଗୀତମାନଂକଠାରୁ ଜନ୍ମ ନେଇ କଥା-ଜଗତରେ ନିଜର ସ୍ଥାନ ଲାଭ କରିଥିଲେ । କାବ୍ୟନାୟକ ହେବା ପୂର୍ବରୁ ସେମାନେ ଲୋକ-କାବ୍ୟନାୟକ ଓ କାବ୍ୟନାୟକ ହୋଇସାରିଥିଲେ । ଏଇ ସବୁ ଲୋକନାୟକ ପଂଜାବର ଶାଂତ ସରଳ ଲୋକଚରିତ୍ରର ପ୍ରତିନିଧିତ୍ୱ କରଂତି । ପଂଜାବୀ ଲୋକଚରିତ୍ରର ସମସ୍ତ ବିବରଣୀ ଉପରର ଲୋକଗୀତ (ସୁଂଦର-ସୁଂଦରିଯେ) ତଥା ଅନ୍ୟାନ୍ୟ ପଂଜାବୀ କଥା ଓ କାହାଣୀଠାରୁ ଉପଲବ୍ଧ ହୁଏ । ପଂଜାବ 'ଲାଲ ପଟାକା' (ନାଲି ଓଢ଼ଣୀ)ର ସୌନ୍ଦର୍ଯ୍ୟକୁ କୌଣସି ନା କୌଣସି ପ୍ରକାରେ 'ଫଟେ ହୁଏ ସାଲୂ' (ଚିରିଯାଇଥିବା ଉଢ଼ଣୀ)ର ଦାରିଦ୍ର୍ୟ ସହିତ ସଂପର୍କିତ କରିପାରିଛି । କୁଂଭାରୁଣୀ ସୋହ୍ନୀ, ଧୋବଣୀ ସସ୍ସୀ, ମଇଁଷି ଚରାଉଥିବା ଅଜାମ ବେଗ ଓ ରାନ୍ଝା ଏମାନେ ସଭିଏଁ ପଂଜାବର ସୁଂଦର, କିଂତୁ ଦରିଦ୍ର ଯୌବନର ପ୍ରତୀକ । ରାଜପୁତ୍ର ପୂରନ ଓ ରସାଲୁର ଲୋକକଥା ମଧ୍ୟ ଲୋକପ୍ରିୟ ହୋଇଥିଲା । ଏହାର ମୁଖ୍ୟ କାରଣ ହେଉଛି ସେମାନେ ରାଜକୁମାର

ହୋଇଥିଲେ ସୁଦ୍ଧା ରାଜସୁଖକୁ ପଦାଘାତ କରି ଦରିଦ୍ର ଅବସ୍ଥାରେ ଘୂରିବୁଲୁଥିଲେ । ପଂଜାବୀ ଲୋକପ୍ରତିଭା ଦରିଦ୍ରର ସୌଂଦର୍ଯ୍ୟକୁ ଆଦରର ସହିତ ସ୍ୱୀକାର କରିଥିଲା । ସଦାଚାର ହେଉଛି ଲୋକ-ସ୍ୱୀକୃତିର ଆଉ ଏକ କଷଟିପଥର । ଏଇ ଗୀତରେ ଦୁଲ୍ଲା ସୁଂଦରୀକୁ ନିଜର ଝିଅ କରିନେଇଛି । ହୀର୍-ରାନ୍‌ଝାଙ୍କ ପ୍ରେମ ପ୍ରତି ପାଞ୍ଚଜଣଯାକ ପୀରଂକର ସଦୟ ଦୃଷ୍ଟି ରହିଛି । ପୂରନ ଗୁରୁ ଗୋରଖନାଥଂକଠାରୁ ବରଦାନ ଲାଭ କରିଛି । ଏଇ ଧରଣର ଶ୍ରେଷ୍ଠ ବଡ଼ ଉଦାହରଣ ପ୍ରାୟ ପ୍ରତ୍ୟେକ କାହାଣୀ ଦେହରେ ଦେଖିବାକୁ ମିଳେ । ପ୍ରେମ ହେଉ ବା ସନ୍ନ୍ୟାସ ହେଉ, ଚୌର୍ଯ୍ୟ-ବୃତ୍ତି ହେଉ ବା ସାଧୁତା ହେଉ, ପ୍ରତ୍ୟେକ ସ୍ଥାନରେ ସଦାଚାର ଏକ ଧାର୍ମିକ ସତ୍ୟ ରୂପରେ ବିଦ୍ୟମାନ । ଏଇ ସଦାଚାର ଦାରିଦ୍ର୍ୟକୁ ମଧ୍ୟ ଧନକର ମର୍ଯ୍ୟାଦା ଦେଇଛି ।

ଆମ କଥା-ସାହିତ୍ୟର ତୃତୀୟ ଉଲ୍ଲେଖନୀୟ ଗୁଣ ହେଉଛି ବ୍ୟକ୍ତିର ସ୍ୱାତଂତ୍ର୍ୟ-ଚେତନା । ଅନେକ ଥର ପରିବାର ଏଇ ସ୍ୱାତଂତ୍ର୍ୟତାର ପଥକୁ ଅବରୋଧ କରିଛି; କିଂତୁ ବ୍ୟକ୍ତି ଏଇ ପାରିବାରିକ ବାଧାବିଘ୍ନକୁ ଏଡ଼ାଇବା ପାଇଁ ଚାହିଁଛି । ବ୍ୟକ୍ତି ଓ ପରିବାର ମଧ୍ୟରେ ଦ୍ୱଂଦ୍ୱ ପଂଜାବୀ କଥା-ସାହିତ୍ୟର ଏଭଳି ଏକ ଗୁଣ, ଯାହାକୁ ବାଦ୍‌ଦେଇ ପଂଜାବୀ କଥା-ସାହିତ୍ୟର କଳ୍ପନା ମଧ୍ୟ କରିଯାଇନପାରେ । ପଂଜାବୀ ନିଜର ପ୍ରିୟ ସାଂସ୍କୃତିକ ବେଷ୍ଟନୀ ଭିତରେ ରହିବାପାଇଁ ଚାହେଁ; କିଂତୁ ସେ ପରିବାରର ବଂଧନକୁ ସ୍ୱୀକାର କରେନାହିଁ । ପ୍ରତ୍ୟେକ ପଂଜାବୀ ସର୍ବସ୍ୱୀକୃତ ସଂସ୍କୃତିର ଅଧୀନତାକୁ ମାନିନିଏ; କିଂତୁ ତାହାରି ଭିତରେ ରହି ମଧ୍ୟ ସେ ନିଜ ଜୀବନର ଗତିପଥକୁ ନିଜେ ନିର୍ଦ୍ଧାରଣ କରିବା ପାଇଁ ଚାହେଁ । ଯେତେବେଳେ ପରିବାର ବ୍ୟକ୍ତିର ଭାଗ୍ୟକୁ ନିର୍ଦ୍ଧାରଣ କରିବା ପାଇଁ ହସ୍ତକ୍ଷେପ କରେ, ସେଇଠି ସଂଘର୍ଷ ଦେଖାଦିଏ । ସୁଂଦରୀର କକେଇ ସୁଂଦରୀର ଅନିଚ୍ଛାସତ୍ତ୍ୱେ ତାକୁ ସମ୍ରାଟ୍‌ର ବିଳାସସାମଗ୍ରୀ କରିବା ପାଇଁ ଚାହିଁଛି—ଏଇଠି ଲୋକଧର୍ମ ତା ବିରୁଦ୍ଧରେ ମୁଂଡ ଟେକିଛି । ହୀର୍, ସୋହନୀ ଓ ସାହିବାଁ ମଧ୍ୟ ନିଜ ଇଚ୍ଛାନୁଯାୟୀ ବିବାହ କରିବା ପାଇଁ ନିଜ ପରିବାର ସହିତ ସଂଘର୍ଷ କରିଛଂତି । ସସ୍‌ସୀକୁ ନିଜ ପରିବାରଠାରୁ ସଂମତି ମିଳିଗଲେ ମଧ୍ୟ ତା ସ୍ୱାମୀର ପରିବାର ତାକୁ ବିରୋଧ କରିଛଂତି । ବିମାତା ଓ ରାଜା ପିତାଂକ ଏକବାଗିଆ ନିଷ୍ପତ୍ତି ଯୋଗୁଁ ପୂରନର ଦୁଃଖ କାହାଣୀର ଆରଂଭ ହେଲା । ପିତାମାତା ନିଜର ଇଚ୍ଛାନୁଯାୟୀ ପୁଅର ମାର୍ଗ ନିରୂପଣ କରିବା ପାଇଁ ଚାହିଁଛଂତି; ହେଲେ ପୁଅ ସ୍ୱାଧୀନ ଚେତନା ବିଷୟରେ କୌଣସି ଆପୋଷ କରିବାକୁ ପ୍ରସ୍ତୁତ ନୁହେଁ । ରିସାଲୁର କାହାଣୀ ମଧ୍ୟ ଅଣଲେଉଟାଣି ସ୍ୱାଧୀନତାର ଏକ ବେଗଶାଳୀ କାହାଣୀ । ସମଗ୍ର ମଧ୍ୟଯୁଗୀୟ ଭାରତୀୟ ସାହିତ୍ୟ ମଧ୍ୟରେ ବୋଧହୁଏ ପଂଜାବୀ ନାୟକନାୟିକା-ମାନଂକର ସ୍ୱଭାବ ସବୁଠାରୁ ଅଲଗା । ପାରିବାରିକ ପ୍ରତିବଂଧନ ବିରୁଦ୍ଧରେ ଏଇ ଧରଣର ପ୍ରଚଂଡ ବିରୋଧ ଅନ୍ୟ କୌଣସି ସାହିତ୍ୟରେ ଦେଖିବାକୁ ମିଳେନାହିଁ । ସମାଜ ଖୁବ୍ ଶକ୍ତିଶାଳୀ ହେଲେ ସୁଦ୍ଧା ତାହା ଏକ ଆକୃତିବିହୀନ ବାସ୍ତବତା । ଆମର କଥା-ସାହିତ୍ୟରେ

ଅସ୍ପଷ୍ଟ ସାମାଜିକ ବିରୋଧର ସ୍ଥାନ ନାହିଁ । କଥା-ସାହିତ୍ୟ ସହିତ,ଲୋକମାନଂକର ଘନିଷ୍ଠତା ଅତି ନିବିଡ଼ ଓ କବିମାନେ ସମାଜର ଅତି ଘନିଷ୍ଠ ଚିତ୍ର ଓ ସ୍ପଷ୍ଟ ବର୍ଣ୍ଣନା ପ୍ରତି ଧ୍ୟାନ ଦେଇଛଂତି । ସମାଜର ସବୁଠାରୁ ଶକ୍ତିଶାଳୀ ଓ ସୁସ୍ପଷ୍ଟ ଅଂଗ ହେଉଛି ପରିବାର । ମଧ୍ୟ-ଯୁଗୀୟ ପଂଜାବୀ ସାହିତ୍ୟ କୃତିମାନଂକରେ ଏହାର ଆଧୁନିକ ବର୍ଣ୍ଣନା ଏକ ଯୁବକର ଆହ୍ୱାନ ଭଳି ଉପସ୍ଥାପିତ ହୋଇଛି । ଏଠାରେ ସ୍ମରଣ ରଖିବାର କଥା ଏହି ଯେ, କାହାଣୀର ପାତ୍ରପାତ୍ରୀ ଶେଷ ନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟଂତ ନିଜର ସ୍ୱାଧୀନତା ପ୍ରତି ବିଶ୍ୱସ୍ତ ରହିଲେ ସୁଦ୍ଧା ସେମାନେ କଦାପି ସଂଯମର ସୀମାକୁ ଉଲ୍ଲଂଘନ କରିନାହାଂତି । ହୀର୍ ଅନବରତ ସଂଘର୍ଷ କଲାପରେ ରାନ୍‌ଝାକୁ ପାଏ; କିଂତୁ ରାନ୍‌ଝାକୁ ପାଇସାରିବା ପରେ ସେ ପିତାମାତାଂକର ସ୍ୱୀକୃତି ଲାଭ କରିବା ପାଇଁ ଚାହିଁଛି ଓ ସେମାନଂକ ଅଧୀନରେ ଥାଇ ନିଜର ନୂତନ ଜୀବନ ଆରଂଭ କରିବା ପାଇଁ କାମନା କରିଛି । ପୁନ୍ନୁ ଚାଲିଗଲା ପରେ ସସ୍ସୀ ତା ପଛେ ପଛେ ଧାଇଁଯାଏ । ନିଜର ପ୍ରଥମ ପ୍ରେମ ପ୍ରତି କୃତଜ୍ଞ ସୋହନୀ ନିଜର ପ୍ରିୟତମ ସହିତ ନିୟମିତ ସାକ୍ଷାତ କଲେ ସୁଦ୍ଧା ସାମାଜିକ ବିଧିନିୟମ ଅନୁଯାୟୀ ସଂପନ୍ନ ହୋଇଥିବା ବିବାହ-ବଂଧନକୁ ସେ ଛିନ୍ନ କରିପାରିନି । ଯୋଗୀ ହୋଇଗଲା ପରେ ମଧ୍ୟ ପୂରନର ମନରେ ପିତାମାତାଂକ ପ୍ରତି ସଂମାନ ଅପ୍ରତିହତ ରହିଛି ।

ଏଇ କାହାଣୀଗୁଡ଼ିକରେ ବର୍ଣ୍ଣିତ ଏଇଭଳି ଅନେକ ଘଟଣାରୁ ଜଣାପଡ଼େ ଯେ ପଂଜାବୀ ଚରିତ୍ର ନିଜର ସ୍ୱାତଂତ୍ର୍ୟକୁ ସାମାଜିକ ସଂଯମର ପରିସର ଭିତରେ ରଖିବାକୁ ଚାହେଁ । କିଂତୁ ଯେତେବେଳେ ଏଇ ସଂଯମ ବଂଧନରୂପରେ ବ୍ୟକ୍ତିଗତ ସ୍ୱାଧୀନତାର ତଂଟି ଚପିଦେବା ପାଇଁ ଉଦ୍ୟମ କରିଛି, ସେ ତାକୁ ପାରୁପର୍ଯ୍ୟଂତ ପ୍ରତିରୋଧ କରିଛି । ସ୍ୱାଧୀନତାର ଅର୍ଥ ବାଧାହୀନ ଉପଦ୍ରବ ନୁହେଁ; କିଂତୁ ସଂଯମକୁ ମଧ୍ୟ ବଂଧନର ରୂପ ଧାରଣ କରିବା ପାଇଁ ପ୍ରଶ୍ରୟ ଦିଆଯାଇପାରେନା ।

ପଂଜାବୀ ଜନମାନସ କଥା-ସାହିତ୍ୟକୁ ଯେଉଁ ପରିମାଣରେ ଆଦର କରିଛି, ଅନ୍ୟ କୌଣସି କାବ୍ୟରୂପକୁ ସେଇଭଳି ଭଲପାଇନାହିଁ । ଏପରି କି ମଧ୍ୟଯୁଗୀୟ ପଂଜାବୀ ସାହିତ୍ୟର ଅନେକଗୁଡ଼ିଏ ଧାରଣା କୌଣସି କୌଣସି ନିର୍ଦ୍ଦିଷ୍ଟ ଲୋକସମୂହଂକର ଧର୍ମ ପାଲଟି ଯାଇଛି । ସେଗୁଡ଼ିକ ଗଭୀର ଭାବରେ ଆମ ମନ ଉପରେ ପ୍ରଭାବ ପକାଇଛି; କିଂତୁ ସେଗୁଡ଼ିକ ସମଗ୍ର ପଂଜାବୀ-ଜଗତ୍‌ରେ ସମପରିମାଣରେ ସ୍ୱୀକୃତି ଲାଭ କରିନାହାଂତି । ପଂଜାବୀ କାହାଣୀର ଅବୟବ ଓ ଆତ୍ମା ମଧ୍ୟ ଧର୍ମ ସହିତ ସଂପର୍କିତ । ଏହା ହେଉଛି ଏକପ୍ରକାରର ଅନନ୍ୟ ଲୋକଧର୍ମ, ଯାହା କି ସଂସ୍ଥା ଓ ସାମ୍ପ୍ରଦାୟିକତାର ପ୍ରଭାବରୁ ମୁକ୍ତ । ପ୍ରକୃତରେ ପଂଜାବର ଲୋକ-ଆଚରଣ ହିଁ ହେଉଛି ତା'ର ଲୋକଧର୍ମର ଆଧାର । ଏହାର ଅର୍ଥ ହେଉଛି, ପଂଜାବୀ ଯେଉଁଠି ଜନ୍ମ ହୋଇ ବଡ଼ ହୋଇଛି, ସେଠାକାର ଆଚାର-ବ୍ୟବହାରକୁ ଆପଣାର କରିନେଇଛି । କିଂତୁ ସେ ନିଜର ଅଂତରର ସତ୍ୟତାକୁ ସବୁବେଳେ ନିସଂକୋଚରେ ପ୍ରକାଶ କରିଛି । ସେ ଅଂତରର ସତ୍ୟତାକୁ ଅଣାୟତ୍ତ, ଅନିୟଂତ୍ରିତ ଓ ଲଗାମହୀନ

ହେବାକୁ ଦେଇନାହିଁ । ତା ସାଂଗେ ସାଂଗେ ସେ ବାହ୍ୟ ବାସ୍ତବତାର ଦାସତ୍ୱକୁ ମଧ୍ୟ ଅସ୍ୱୀକାର କରିଦେଇଛି । ସଦାଚାରର ମଧ୍ୟମ ପନ୍ଥା ହିଁ ହେଉଛି ପଂଜାବୀ ଆଚାର-ବ୍ୟବହାର ଓ ପଂଜାବୀ କାହାଣୀର ମାର୍ଗ । ଦୈନଂଦିନ ଜୀବନରେ ଏହି ପଥରେ ସ୍ୱଚ୍ଛଂଦରେ ଚାଲିହେବ ।

ସଂକ୍ଷେପରେ ସରଳତା, ସଦାଚାର, ସ୍ୱାତଂତ୍ର୍ୟ ଓ ସଂଯମର ମିଳିତ ପୃଥିବୀ ହିଁ ହେଉଛି ପଂଜାବୀ କଥା-ସାହିତ୍ୟର ସଂସାର ।

—ହରିଭଜନ ସିଂହ

# ସୂଚୀପତ୍ର

মোহন সিংহ

# হীর্ ঘন্টা

হীর্‌র কাহাণী মোগলমানংক ভারতবর্ষকু আসিবার কিছু সময় পূর্বর ঘটণা । এহা সেই সময়র কথা, যেতেবেলে রাজপুতমানে নূআ নূআ মুসলমান ধর্ম গ্রহণ করুথিলে । সিয়ালমানে ধামনগরর রাজপুত থিলে । 1258 মসিহারে রায়শংকরংক পুত্র রায়সিয়াল বাবা ফরদ্‌গংজংক ঠারু ইস্‌লাম ধর্ম গ্রহণ করিথিলে । মুসলমান হেবা সত্ত্বে সেমানে হিংদু রীতিনীতিকু ত্যাগ করি ন থিলে । সেমানে ঘরর মহিলামানংকু পর্দা ভিতরে রখু নথিলে । তুর্কীস্ত-মানংক পরি নীল পোষাক পিন্ধিবা এবং পিত্তল বাসনর ব্যবহার মধ্য তাংক ঘরে মনা থিলা । সিয়ালমানংকর জণে পূর্বপুরুষ মল্ খান 1462 মসিহারে ঝংগ গ্রামটি বসাইথিলে । চূচক মধ্য সিয়াল্‌মানংকর জণে সর্দার থিলা । হীর্ এই মুখিআ চূচকর ঝিঅ । মুখিআর ঝিঅ হোইথিবারু সে অতি গেলবসররে বঢ়িথিলা । সখীমানংক গহণরে দোল খেলিবা, চেনাব নদীরে যাই মুক্তভাবে স্নান করিবা কিংবা বসংত ঋতু পরি হজকু সজেই চউতরারে বসি চেনাব নদী কূলর ঘনকুংজর সৌন্দর্যকু মুগ্ধ হোই দেখিবা, কিংবা তেজ দেহরে প্রতিফলিত সূর্যোদয়র মনলোভা দৃশ্য এবং সন্ধ্যারে লোহিত প্রতিবিংবর লীলা দেখি বিভোর হেবা থিলা তা'র সবুদিনর কাম । হীর্ কেবল চলচঞ্চল, স্বাস্থ্যবতী, সাহসী যুবতী থিলা তা' নুহেঁ, সে মধ্য থিলা অপরূপা । রূপ ও যৌবনর মিলন থিলা চমত্কার । গজগমনা হীর্‌কু দেখিলে মনে হেউথিলা যেমিতি উড়ুযাউথিবা রাজপক্ষীর ডেণামান আকাশরে পিটিহেউছি । ভারতীয় পরংপরা অনুযায়ী সে 'মোহিনী ও ইংদ্রাণী'ঠারু কম্ নথিলা ও ইরানী পরংপরা অনুযায়ী 'শিরী পরি লা রূপ ভংগিমা নেই হীর্ হজারে জণংক ভিতরে লুচ্ছইলে মধ্য লুচু ন থিলা' ।

ঝংগর সর্দার হেবা ব্যতীত চেনাব নদীর ডংগাঘাটমানংক ব্যবস্থার ভার মধ্য চূচক হাতরে থিলা । যাত্রীমানংকু নদী পার করিবাপাইঁ ঘাটমানংকরে

ଅନେକ ନାଆ ପାଲ ବାନ୍ଧି ଛିଡ଼ା ହୋଇଥାନ୍ତି । ଦିନତମାମ ପଥିକ ଓ ସୌଦାଗର-ମାନେ ଘାଟ ଦେଇ ନଈ ପାରି ହେଉଥିଲେ । ପ୍ରତ୍ୟେକ ପଥିକର ଆଖି ପ୍ରଥମେ ହୀର୍‌ର ନାଆ ଉପରେ ପଡ଼ୁଥିଲା । ହୀର୍‌ର ନାଉରୀ ଲୁଡ୍‌ଡନ ନାଆଟିକୁ ଅନେକ ଯତ୍ନରେ ସଜେଇ ରଖିଥାଏ । ଏଇ ଖାଲି ନାଆକୁ ଦେଖି ପଥିକମାନଙ୍କ ମନରେ ଅନୁପମ ସ୍ୱପ୍ନ ଜାଗ୍ରତ ହେଉଥିଲା; କିନ୍ତୁ ଯାହାଙ୍କୁ ହୀର୍‌ର ଦର୍ଶନ କରିବାର ସୌଭାଗ୍ୟ ମିଳି ଯାଉଥିଲା, ସେମାନେ ନିଶାରେ ଭୋଳ ହୋଇ ଯାଉଥିଲେ । ଏଭଳି ଭାବରେ ହୀର୍‌ର ରୂପ ଓ ଯୌବନର କାହାଣୀ ପଥିକ ଓ ସୌଦାଗରମାନଙ୍କ ଜରିଆରେ ଦୂରଦୂରାନ୍ତକୁ ବ୍ୟାପି-ଯାଇଥିଲା ।

ତଖ୍‌ତହଜାରା ଝଙ୍ଗ ଠାରୁ ଅଶୀ ମାଇଲ ଦୂରରେ ଅବସ୍ଥିତ ଥିଲା । ସେଠି ମଧ୍ୟ ହୀର୍‌ର ସୌନ୍ଦର୍ଯ୍ୟ କାହାଣୀ ପହଞ୍ଚି ସାରିଥିଲା ଏବଂ ସେଠାକାର ଯୁବକ ଯୁବତୀମାନେ ହୀର୍‌ର ନାମ ସହିତ ସୁପରିଚିତ ଥିଲେ । ତଖ୍‌ତହଜାରାର ମୁଖିଆର ନାମ ଥିଲା ମୌଜୁ । ସେ ଜାତିରେ ଥିଲା ରାନ୍‌ଝା ଜାଟ । ତା'ର ଆଠଜଣ ପୁଅଙ୍କ ଭିତରେ ସବାସାନ ଧୀଦୋ ଦେଖିବାକୁ ସବୁଠାରୁ ସୁନ୍ଦର ଓ କୋମଳ ଥିଲା । ବାପ ମଲା ପରେ ଭାଇମାନେ ମାପି ଯୋଖି ଜମିତକ ଭାଗବାଣ୍ଟ କରିନେଲେ । ସମସ୍ତେ ସବୁ ଭଲ ଭଲ ଜମିତକ ନେଇସାରିବା ପରେ ଧୀଦୋ ଭାଗରେ ଅନୁର୍ବର ଓ ଟାଙ୍ଗରା ଜମିତକ ପଡ଼ିଲା । ବାପର କୋଡ଼ପୋଛା ଗେଲବସରର ପୁଅ ହୋଇଥିବାରୁ ରାନ୍‌ଝା କ୍ଷେତକାମ କ'ଣ ଜାଣି ନ ଥିଲା, ଏଣୁ ବିଲବାଡ଼ି ପ୍ରତି ଧ୍ୟାନ ଦେବା ଛାଡ଼ି ସେ ରସିକ ସାଜି ଖାଲି ଗାଁ ଦାଣ୍ଡରେ ବୁଲିବାକୁ ଲାଗିଲା । ରାନ୍‌ଝାର ଭାଉଜମାନେ ତାକୁ ବହୁତ ଶ୍ରଦ୍ଧା କରୁଥିଲେ । କିଛିଦିନ ଯାଏ ଆଗଭଳି ଭଲ ପାଇଲେ ମଧ୍ୟ ଯେତେ-ବେଳେ ଦେଖିଲେ ଯେ ବାଳରେ ତେଲମାରି ଟେରି କାଟିବା ଓ ବଂଶୀ ବଜେଇବା ଛଡ଼ା ରାନ୍‌ଝା ଅନ୍ୟ କୌଣସି କାମକୁ ଯୋଗ୍ୟ ନୁହେଁ; ତା'ର ଭାଉଜମାନେ ତାକୁ ବିଦ୍ରୂପ କରିବାକୁ ଆରମ୍ଭ କଲେ । ଯଦି ରାନ୍‌ଝା ଭାଉଜମାନଙ୍କ ସ୍ନେହର ଢଳେହେଲେ ପ୍ରତିଦାନ ଦେଉଥାନ୍ତା ତା'ହେଲେ ବୋଧେ ସେମାନେ ଏତେ କଟୁ କଥା କହିନଥାନ୍ତେ; କିନ୍ତୁ ରାନ୍‌ଝାର ସ୍ୱଭାବ ଥିଲା ଭିନ୍ନ ଧରଣର । ତା'ର ବେଖାତିର ଯୌବନର କାହାପାଇଁ ଚିନ୍ତା ନ ଥିଲା । ଫଳରେ ଦିନେ ତା'ର ସବାସାନ ଭାଉଜ ବ୍ୟଙ୍ଗୋକ୍ତି କଲେ—"ତୋ'ର ଯଦି ଆମ ପ୍ରତି ଢଳେ ହେଲେ ଖାତିର ନାହିଁ, ଯା' ସିଆଲ୍‌ର ହୀର୍‌କୁ ବାହାହେଇ ନେଇଆ ।"

ଭାଉଜର କଟୁ ମନ୍ତବ୍ୟ ରାନ୍‌ଝାର ହୃଦୟକୁ ବିଷଣ୍ଣ କରିଦେଲା ଓ "ହତ୍ଥ ବଂଝଲୀ, ଜୁତ୍ଥୁଁ ଖୁର କଚଛେ, ରାନ୍‌ଝା ହୋ ତୁରିଆ ବାରସ ଶାହ ଜେହା ।"[1] ପ୍ରଥମ ରାତିଟି ସେ ରାସ୍ତା କଡ଼ର ଏକ ମସ୍‌ଜିଦ୍‌ରେ ବିତାଇଲା । ସେଇଠି ମସ୍‌ଜିଦ୍‌ର ମୁଲ୍ଲାଙ୍କ ସହିତ

1. ହାତରେ ବଂଶୀ ଧରି, କାଖରେ ଜୋତା ଜାକି ରାନ୍‌ଝା ବାରିସଶାହଙ୍କ ଭଳି ଘରୁ ବାହାରିପଡ଼ିଲା ।

ତା'ର ଗଂଡଗୋଳ ହୋଇଗଲା । ପରଦିନ ସକାଳୁ ଉଠି ରାନ୍‌ଝା ପୁଣି ନିଜ ବାଟରେ ବାହାରିଗଲା । ଶେଷକୁ ସେ ନିଜର ଗଂତବ୍ୟ ସ୍ଥାନ ଚେନାବ୍ ଘାଟରେ ପହଂଚିଲା । ସେ ଦେଖିଲା ଲୁଡ଼୍‌ଡନ ନାଉରୀ ନିଜର ନାଆ ମେଲିଦେବା ଉପରେ । ରାନ୍‌ଝା ଲୁଡ଼୍‌ଡନକୁ ଖୋଦାଙ୍କ ଦୁହାଇ ଦେଇ ନଈ ପାରି କରିଦେବା ପାଇଁ ମିନତି କଲା । କିଂତୁ ହୃଷ୍ଟପୁଷ୍ଟ ନାଉରୀ ଧକ୍‌କାମାରି ରାନ୍‌ଝାକୁ ଦୂରକୁ ଛଟାଇ ଦେଲା ଓ ନିଜ ନାଆକୁ ପାଣି ମଝିକୁ ପେଲି ଦେଲା । ଯେତେବେଳେ ଲୁଡ଼୍‌ଡନର ନାଆରେ ଥିବା ସ୍ତ୍ରୀଲୋକମାନେ ରାନ୍‌ଝାର ରୂପ ଦେଖିଲେ, ତା'କୁ ବେଢ଼ି ଯାଇ ବସିଗଲେ ଓ ନାନାପ୍ରକାରର ଚୁଟୁକିଆମାନ କହିବାକୁ ଆରଂଭ କଲେ । ରାନ୍‌ଝାର କ୍ଳାଂତି ଦୂର ହେଲାପରେ ସେ ବଂଶୀ ବଜେଇବାକୁ ଲାଗିଲା । ସେତିକିରେ ଘାଟଯାକର ସବୁ ନରନାରୀ ତା' ପାଖରେ ଜମା ହୋଇଗଲେ । ଲୁଡ଼୍‌ଡନର ନାଆରେ ଥିବା ନାରୀମାନେ ରାନ୍‌ଝା ପ୍ରତି ଏତେ ଆସକ୍ତ ହୋଇ ପଡ଼ିଲେ ଯେ ସେମାନେ ତା'କୁ ହୀର୍‌ର ନାଆଭିତରକୁ ଡାକି ନେଇଗଲେ । ନାଆରେ ରେଶମୀ ପର୍ଦ୍ଦା ଭିତରେ ହୀର୍‌ର ବିଛଣା ସଜା ହୋଇଥାଏ । ରାନ୍‌ଝା ଅନେକ ଦୂର ଯାତ୍ରା କରି ଆସିଥିଲା; ବିଛଣା ଉପରେ ଗଡ଼୍ ଗଡ଼୍ ସେ ନିଦରେ ଶୋଇପଡ଼ିଲା । ହୀର୍ ଯେତେବେଳେ ଶୁଣିଲା ଯେ ଲୁଡ଼୍‌ଡନ ତା' ବିଛଣାରେ ଜଣେ ବିଦେଶୀକୁ ଶୁଆଇ ଦେଇଛି, ସେ ରାଗରେ ତମତମ ହୋଇ ଜଳିଉଠିଲା ଓ ସଖୀମାନଂକ ସାଂଗରେ ସେଠାକୁ ଧାଇଁଆସିଲା । ଆସିବା ସଂଗେ ସଂଗେ ବାଡ଼ିରେ ପିଟି ପିଟି ଲୁଡ଼୍‌ଡନକୁ ଲହୁଲୁହାଣ କରିଦେଲା । ତା'ପରେ ସେ ବିଛଣା ପାଖକୁ ଛୁଟିଗଲା । ବିଦେଶୀକୁ ନିଜ ବିଛଣାରେ ଶୋଇଥିବା ଦେଖି ରାଗରେ ବାଡ଼ିଏ ମାରିଲା; କିଂତୁ "ରାନ୍‌ଝେ ଉଠ୍‌କେ ଅଖିୟାଂ, ବାହି ସଜନ, ହୀର୍ ହସ୍‌କେ ମେହରବାନ ହୋଇ ।"[1]

ହୀର୍ ଆଖିରେ ଏକ ନୂତନ ଶିଖା ଦପ୍ ଦପ୍ ହୋଇ ଜଳିଉଠିଲା । ସେ ନାଆର ପର୍ଦ୍ଦାମାନ ଟାଣିଦେଇ ରାନ୍‌ଝା କଡ଼କୁ ପଲଂକରେ ବସିପଡ଼ିଲା । କେଜାଣି କେତେ ସମୟ ଧରି ଦି'ଜଣଂକର ଗୋପନ କଥାଭାଷା ଚାଲିଲା । ଯେତେବେଳେ ହୀର୍ ରାନ୍‌ଝାକୁ ଆପଣାର ପ୍ରେମ ସମର୍ପିଦେଲା, ରାନ୍‌ଝା କହିଲା, "ଯଦି ତୋ'ର ଚରଖା କାଟିବା ଓ ଦୋଳି ଖେଳରେ ଭୋଳ ହୋଇ ମୋତେ ଭୁଲିଯିବାକୁ ଇଚ୍ଛା ଅଛି, ତା'ହେଲେ ଏବେ ସ୍ପଷ୍ଟ କରି କହିଦେ ।" ହୀର୍ ଗଂଭୀର ହୋଇ କହିଲା :

"ମୈନୂଁ ବାବଲେ ଦୀ କସମ ରାଂଝିୟା ଵେ,
ମରେ ମାଁଉ ଜେ ତୁ ଧ ଆଁ ମୁଖ ମୋଡ଼ାଁ । ।
ଅନ୍ନୀ ହୋୟେ କେ ନୈନ ପ୍ରାଣ ଜାଵଣ,
ତେରେ ବାଝ୍ ଜୋ କୌନ୍ତ ମୈଁ ହୋର ଲୋଡ଼ାଁ । ।

1. ରାନ୍‌ଝା ଉଠିଯାଇ କହିଲା, 'ଆହା ସଜନୀ'; ହୀର୍ ହସିଦେଇ ପ୍ରୀତ ହେଲା ।

ମୈ ତାଂ ଧୁର ଦରଗାହ ଥୀଁ ଲଥ଼ା ରାନ୍‌ଝା,
ଥୀ କାଁସୁର ଯେ ପ୍ରୀତ ଦା ସ୍ୱତ ତୋଡ଼ାଁ । । [1]

ଦୁ'ପକ୍ଷ ପକ୍‌କା କଥା ଆଦାନ ପ୍ରଦାନ ହୋଇ ସାରିଲା ପରେ ହୀର୍ ଅତି ଚତୁରତାର ସହିତ ବାପ ମା'ଙ୍କୁ ରାଜି କରେଇ ରାନ୍‌ଝାକୁ ମହିଷୀ ଚରେଇବା ପାଇଁ ଚାକର ରୂପରେ ନିଯୁକ୍ତ କରେଇନେଲା । ଚୂଚକ ଅନେକ ଥର କହିଲା ଯେ ଏ ପିଲାଟି ଦେଖିବାକୁ ଅତି ସୁନ୍ଦର ଓ କୋମଳ ମନେ ହେଉଛି, ଇଏ ମହିଷୀ ଚରେଇବା ପାଇଁ ଯୋଗ୍ୟ ନୁହେଁ । ଇଏତ ଆମ ମହିଷୀମାନଙ୍କୁ ଅନ୍ୟମାନଙ୍କର ମହିଷୀ ସହିତ ମିଶାଇ ଦେବ । ତା' ପକ୍ଷରେ ବଣ ଜଙ୍ଗଲର କଷ୍ଟ ସହ୍ୟ କରିବା ଅସମ୍ଭବ, କାରଣ ଜଙ୍ଗଲରେ ହିଂସ୍ରଜନ୍ତୁମାନେ ପଦାରେ ଘୂରି ବୁଲୁଥାନ୍ତି । କିନ୍ତୁ ହୀର୍ ଏହା କହି ବାପାଙ୍କୁ ଆଶ୍ୱାସନା ଦେଲା ଯେ :

"ବଡ଼ା ଚତର ତେ ଅକଲ ଦା କୋଠ ନଢ୍ଠା,
ମଁହୀ ବହୁତ ସମ୍ଭାଲ୍ କେ ଚାଡ଼ଦା ଏ ।
ହିକ୍‌କେ ନାଲ ପିଆର୍ ଦେ ହିଁ ଗଦେକେ,
ସୋଟା ସିଂଗତେ ମୂଲ ନା ମାରଦା ଏ ।" [2]

ଏଭଳି ଭାବରେ ରାନ୍‌ଝା ବାରବର୍ଷ ପର୍ଯ୍ୟନ୍ତ ସିଆଲ୍‌ମାନଙ୍କର ମହିଷୀ ଚରେଇଲା । ପ୍ରତିଦିନ ସେ ମହିଷୀମାନଙ୍କୁ ନଦୀ କୂଳର ଜଙ୍ଗଲକୁ ନେଇଯାଏ ଓ ସଞ୍ଜବେଳେ ବଂଶୀ ସ୍ୱରର ପଛେ ପଛେ ସେମାନେ ଘରକୁ ଫେରି ଆସନ୍ତି । ହୀର୍ ପ୍ରତିଦିନ କଂସାରେ ଚୂରି [3] ଭରି ଜଙ୍ଗଲରେ ପହଂଚଯାଏ । ସେଠି ଦୁହେଁ ମିଶି ଏକାସାଂଗରେ ଚୂରି ଖାଆନ୍ତି । ବେଳେବେଳେ ଅରଣ୍ୟର ଛାଇ ଅନ୍ଧାରରେ ସେମାନେ ପ୍ରେମର ଶୀର୍ଷତମ ଶୃଙ୍ଗରେ ପହଂଚିଯିବାର ଦେଖାଯାଉଥିଲା । ଖସ୍ରରେ ଚଞ୍ଚଳ ହେଉଥିବା ନଦୀର ତରଂଗାୟିତ ଲହରୀକୁ ଦେଖି ସେମାନେ ବିଭୋର ହୋଇ ଉଠୁଥିଲେ । ହେଲେ ପ୍ରେମ ଓ କସ୍ତୁରୀର ବାସ୍ନା କ'ଣ ଲୁଚି ରହେ ? ଖୁବ୍ ଶୀଘ୍ର ହୀର୍-ରାନ୍‌ଝାର ପ୍ରେମକାହାଣୀ ଲୋକଚର୍ଚ୍ଚାର ବିଷୟବସ୍ତୁ ହୋଇଗଲା । ଯେତେ ମୁହଁକୁ ସେତେ କଥା । କିନ୍ତୁ ହୀର୍-ରାନ୍‌ଝାର ଯୋଡ଼ି

---

1. ରାନ୍‌ଝା ! ମୋର ବାପାଙ୍କର ରାଣ, ଯଦି ମୁଁ ତୋ' ପାଖରୁ ମୁହଁ ବୁଲାଇ ନେବି ତା'ହେଲେ ମୋର ମା' ମରିଯିବ । ଯଦି ତୋ' ଛଡ଼ା ମୁଁ ଅନ୍ୟ କାହାକୁ ପତି ରୂପରେ କାମନା କରିବି, ମୁଁ ଅନ୍ଧୁଣୀ ହୋଇ ମରିଯିବି । ମୁଁ ତ ରାନ୍‌ଝାକୁ ପ୍ରାର୍ଥନା ଗୃହରୁ ପାଇଛି, ଯଦି ମୁଁ ପ୍ରେମର ନିୟମ ଭାଂଗେ ଘୃଷୁରି ହୋଇଯିବି ।

2. ଏଇ ପିଲା ଅତି ଚତୁର ଓ ବୁଦ୍ଧିର ଗଂତାଘର; ସେ ଅତି ସାବଧାନ ହୋଇ ମହିଷୀ ଚରାଏ, ଅତି ଶରଧାରେ ମହିଷୀମାନଙ୍କୁ ଚୁ ଚୁ କରେ ଓ ସେ ମହିଷୀ ମାନଙ୍କର ଶିଂଗକୁ କେବେ ବି ଠେଂଗା ମାରେନି ।

3. ଉତ୍ତରଭାରତରେ ତିଆରି ହେଉଥିବା ମକାଗୁଣ୍ଡ ଓ ଗୁଡ଼ରେ ପ୍ରସ୍ତୁତ ରୁଟିର ଚୂର୍ଣ୍ଣ ।

ଏତେ ସୁଂଦର ମାନୁଥିଲା ଯେ କେହିହେଲେ ତାଂକର ମିଳାମିଶାକୁ ଖରାପ ଭାବୁ ନଥିଲେ; ବରଂ ସମସ୍ତେ ଏହି କଥାକୁ ଘୋଡ଼ାଇ ରଖୁଥିଲେ ।

ହେଲେ କ'ଣ ହେବ ? ଏହି ପ୍ରେମ ନାଟକରେ ଏକ ଉପଦ୍ରବକାରୀର ଆବିର୍ଭାବ ଘଟିଯାଇଥିଲା । ସେ ଥିଲା ହୀର୍ ର କାକା କୈଦୌ ଲେଙ୍ଗଡା ।

କୈଦୌର ବେଶଭୂଷା ଥିଲା ବିଚିତ୍ର ଧରଣର—ମୁଂଡରେ କଲଂଦରୀ ଟୋପି, ବେକରେ କାଠିମାଳି, ହାତରେ ଖପରା । ଭାଂଗ ଗଂଜେଇପ୍ରିୟ କୈଦୌ ଗାଁ ବାହାରେ କୁଡ଼ିଆରେ ରହୁଥିଲା । ଶୁଆ, ପାରା, କୁକୁଡ଼ା ପାଳିବା ତା'ର ସଉକ ଥିଲା । କଥା ହେଉଛି, ସେ ଥିଲା ଅଧା କାଠ ଓ ଅଧା ଫକୀର । ସାରାଜୀବନ ଶୁଣି ପିଣ୍ଡାରେ ଭାଂଗ ପିଇ ଗଡ଼ି ଗଡ଼ି ସେ ବିତାଇସାରିଥିଲା । ସାଧାରଣ ଫକୀରମାନଂକ ପରି ତା'ର ସ୍ୱଭାବ ଥିଲା ନିହାତି ରୁକ୍ଷ । ପ୍ରେମପ୍ରୀତିର ସୁଖଦ ପରିଣତି ଦେଖି ତା'ର ଈର୍ଷାରେ ଜଳିବା ଥିଲା ସ୍ୱାଭାବିକ । ତା'ର ଅବା କେମିତି ସହ୍ୟ ହେବ ଯେ ହୀର୍ ଓ ତା'ର ସଖୀମାନେ ରାନ୍ଝା ସହିତ ବସି ଚୁରି ଖାଉଥିବେ ଓ ଖାଇ ସାରିଲା ପରେ ବଣ ଭିତରେ ବୋହୂଚୋରି ଖେଳିବେ । ଏଣୁ ଦିନେ କୈଦୌ ହୀର୍ କୁ ପିଛାକରି ନଈକୂଳର ଜଂଗଲକୁ ଚାଲିଗଲା । ସେଠି ରାନ୍ଝା ବସି ଚୁରି ଖାଉଥିଲା ବେଳେ ହୀର୍ ନଈକୁ ପାଣି ଆଣିବା ପାଇଁ ଗଲା । କୈଦୌ ଅତି ଅଂତରଂଗତାର ସହିତ ରାନ୍ଝାକୁ କିଛି ଚୁରି ମାଗିଲା । ରାନ୍ଝା ତା' ଆଡ଼କୁ କଂସା ବଢ଼େଇ ଦେଇ କହିଲା— "ମୁଠା ଭରି ନେଇ ଯା' ।" କୈଦୌ ମୁଠାଏ ଚୁରି ନେଲା ପରେ ଲେଙ୍ଗେଇ ଲେଙ୍ଗେଇ ଗାଁ ଆଡ଼କୁ ଧାଇଁବାକୁ ଲାଗିଲା । ହୀର ପାଣି ନେଇ ଆସିବା ପରେ ରାନ୍ଝାର ବୋକାମୀ ଯୋଗୁଁ ବହୁତ ବିରକ୍ତ ହେଲା । ସେ ଜାଣିଥିଲା ଯେ ଗାଁରେ ପହଂଚି ଲେଙ୍ଗଡା ନିଜର ସ୍ୱଭାବ ଅନୁଯାୟୀ ଖୁବ୍ ପାଟି କରିବ । କୈଦୌ ଗାଁ ଭିତରେ ପହଂଚିବା ଆଗରୁ ହୀର୍ ଧାଇଁଯାଇ ତାକୁ ଧରି ପକାଇଲା ଏବଂ ଟୋପି, ମାଳା ଓ କାଠମାଳିର ଦଉଡ଼ିକୁ ଟାଣି ଓଟାରି ତା'ର ଦୟନୀୟ ଅବସ୍ଥା କରିଦେଲା । ଚୁରିତକ ମାଟିରେ ବିଞ୍ଚିହୋଇ ଗଲା; କିନ୍ତୁ ହୀର୍ ଚାଲିଗଲା ପରେ କୈଦୌ ଉଠିପଡ଼ି ଚୁରିତକ ମାଟିରୁ ଗୋଟେଇ ନେଲା ଓ ଗାଁ ଭିତରକୁ ଯାଇ ପାଟି କରିବାକୁ ଲାଗିଲା । ଚୁଚକ ଓ ମଲକୀ ବହୁତ ଅପମାନ ବୋଧ କଲେ । ହୀର୍ ର ଭାଇ ସୁଲତାନ ଖଂଡା ହଲାଇ କହିଲା, "ମୁଁ ସେ ଚାକରକୁ ଖଂଡ ଖଂଡ କରି କାଟିଦେବି ।" ସେମାନେ ରାନ୍ଝାକୁ ଧିକ୍କାର କରି ଘରୁ ତଡ଼ି ଦେଲେ । କିନ୍ତୁ ଏଭଳି ଦୁର୍ଯୋଗରେ ମଧ୍ୟ ହୀର୍ ହାର୍ ମାନିବାକୁ ପ୍ରସ୍ତୁତ ନଥିଲା; ବରଂ ଅତି ଦଂଭର ସହିତ ସେ ତା'ର ଭାଇକୁ କହିଲା :

ଅବ ଖାଁ ଲଗୀୟାଁ ମୂଡ଼ନ ନ ବୀର ମେରେ
ବେ ମୈଁ ଘୋଲ୍ ଘତ୍ତୀ ବଲିହାରୀୟବୋ ।
ବହନ ପଯେ ଦରୀୟା ନା କଦୀ ରୁକଦେ,
ଭାବେଁ ମାର ଦେଖୋ ବହ୍ନାଁ ଭାରୀୟାଁ ବେ ।

ଖିଳ ନିକଲନୌଁ କଣ୍ଡା ନା ଚୁକଦା ଏ,
ଜିତ୍‌ଥେ ଲଗୀୟାଁ ତେଜ କଟାରୀୟା ବେ । ••• (1)

ଚାରବର୍ଷର ପରିଶ୍ରମ ଶୁଖିଆ ପୋଡ଼ାରେ ଯିବା ଦେଖି ରାନ୍‌ଝା ପଳେଇଯାଇ ଫକୀର-ମାନଙ୍କ ରହିବା ଜାଗାରେ ଶୋଇଲା; କିନ୍ତୁ ତା'ପରଦିନ ଯେତେବେଳେ ମହିଷୀମାନଙ୍କୁ ନଈ କୂଳରେ ଜଙ୍ଗଲ ଆଡ଼କୁ ନିଆହେଲା, ସେମାନେ ରାନ୍‌ଝାର ଅନୁପସ୍ଥିତିରେ ପାଦେ ହେଲେ ଆଗକୁ ଗଲେ ନାହିଁ । କୁଣ୍ଡ ସାମ୍ନାରେ ବାନ୍ଧି ଦେଲା ପରେ ସେମାନେ ଦାନାରେ ମୁହଁ ବି ମାରିଲେନି । ଶେଷକୁ ହୀର୍ ମାଳି ଚୂଚକ ଓ ମଲକୀ କୁଟନୀତିର ଆଶ୍ରୟ ନେଲେ ଓ ନାନାପ୍ରକାର ବାଆଁରେଇ ଫସୁଲେଇ ରାନ୍‌ଝାକୁ ପୁଣି ମହିଷୀମାନଙ୍କ ସହିତ ପଠେଇଲେ ଓ ସେମାନେ ହୀର୍‌କୁ ମଧ୍ୟ ବୁଝାଇ ଦେଲେ ଯେ ଏତେ ଦୁର୍ନାମ ହେବା ପରେ ତା'ର ନଈ-କୂଳର ଜଙ୍ଗଲକୁ ଯିବା ଠିକ୍ ନୁହେଁ । ସେମାନେ ଚଞ୍ଚଳ ହୀର୍‌ର ବାହାଘର କରିଦେବା ପାଇଁ ମନେ ମନେ ସ୍ଥିର କରିସାରିଥିଲେ । ତା' ଫଳରେ ଗୁଜର ଟୋକାର ଅଶୁଭ ଛାଇ ଆପଣାଛାଏଁ ଟଳିଯିବ । କିନ୍ତୁ ଗାଁସାରା ଲୋକ ହୀର୍-ରାନ୍‌ଝା ପ୍ରତି ସହାନୁଭୂତିଶୀଳ ଥିଲେ । ତା'ଛଡ଼ା ହୀର୍‌ର ବୁଦ୍ଧି ମଧ୍ୟ ଥିଲା ପ୍ରଖର । ସେ ଖୁବ୍ ଶୀଘ୍ର ମିଠ୍‌ଠୀ ଭଣ୍ଡାରୁଣୀର ଘରକୁ ମିଳନସ୍ଥଳୀ କରିନେଲା । ରାନ୍‌ଝା ମହିଷୀମାନଙ୍କୁ ଜଙ୍ଗଲରେ ଛାଡ଼ିଦେଇ ଭଣ୍ଡାରୁଣୀ ଘରକୁ ଚାଲିଆସେ ଓ ସେଠି ଦୁହେଁ ପ୍ରାଣ ଭରି ପ୍ରେମାଳାପ କରନ୍ତି । କେତେବେଳେ ନଈରେ ଗାଧୋଇବାରେ ଠିକ୍ ହୋଇଯାଏ । ହୀର୍ ନିଜ ସଖୀମାନଙ୍କ ଗହଣରେ ରାନ୍‌ଝା ସହିତ ସ୍ନାନ କରୁଥିଲା ।

"ଏସ ତଖ୍‌ତ ହଜାରେ ଦେ ଡଂବରେ ତେ,
ରଂଗରଂଗ ଦୀୟେଁ ଜାଲୀୟାଁ ପାଂଦୀ ହେ ।" (2)

କିନ୍ତୁ କଥାଟା ଘରିଆଡ଼େ ବ୍ୟାପିଗଲା ପରେ ଖେଡ଼େ ସହିତ ହୀର୍‌ର ବିବାହ ସ୍ଥିର ହୋଇଗଲା । କିଛିଦିନ ପରେ ଖେଡ଼େ ବାଜା, ଗୀତ ଓ ବରଣି ସମେତ ରଙ୍ଗପୁରରୁ ଆସି ଝଙ୍ଗରେ ପହଞ୍ଚିଗଲେ । ଅନେକ ପ୍ରକାରର ଖାଇବା ଜିନିଷ ତିଆରି ହେଲା, ବାଣ ହାବେଲି ଫୁଟିଲା, ଗାଁଟିଯାକ ସରଗରମ ହୋଇ ଉଠିଲା । ହେଲେ ଏତେ ସବୁ ଜାକ-ଜମକ ଭିତରେ ରାନ୍‌ଝା ଅଣନିଃଶ୍ୱାସୀ ହୋଇ ପଡ଼ିଲା । ସେ ଅତି ବିମର୍ଷ ଓ ନିରୁପାୟ

1. ଭାଇ ମୋର ! ମୁଁ ମରିଯାଏଁ, ହେଲେ ଥରେ ଚକ୍ଷୁର ମିଳନ ହେଲେ ଆଉ ହଟେ ନାହିଁ । ବହିଯାଉଥିବା ନଈ କେବେ ସ୍ଥିର ହୋଇଯାଏ ନାହିଁ, ତା' ଦେହରେ ବନ୍ଧ ବାନ୍ଧି ଦେଖିନିଅ । ଯେଉଁ ସ୍ଥାନରେ ତୀକ୍ଷ୍ଣ ଛୁରୀର ଆଘାତଲାଗେ, ସେଠି ନିଶ୍ଚୟ ରକ୍ତ ବହେ, କେବେବି ବନ୍ଦ ହୁଏ ନାହିଁ ।

2. ତଖ୍‌ତହଜାରର ଏଇ ସରଳ ବାଳକଟି ଉପରେ ନାନା ପ୍ରକାରର ରଙ୍ଗିନ ଜାଲ ବିଛେଇ ଦେଉଛନ୍ତି ।

ଜଣାପଡ଼ୁଥିଲା । କେତେବେଳେ ସେ ନଈ କୂଳରେ ବସି ଭାଂଗ ପିଉଥାଏ ତ କେତେବେଳେ ମହିଷୀମାନଂକ ବେକରେ ହାତ ଛଂଦି କାଂଦୁଥାଏ । ହୀର୍‌ର କୌଣସି ସଖୀ ତାକୁ ଡାକିଲା ମାତ୍ରେ କଥା କଥାରେ ତା'ର କୋହ ଉଚ୍ଛୁଳି ପଡ଼ୁଥିଲା । ସେପଟେ ହୀର୍ "ମାଇୟେଁ"[1] ପଡ଼ିଥାଏ । ସେ ରାନ୍‌ଝାର ହୃଦୟର ବେଦନାକୁ ବୁଝିପାରୁଥିଲା । ସେ ସଖୀମାନଂକୁ କହିଲା, "ଯିବା ଆଗରୁ ମୁଁ ରାନ୍‌ଝା ସହିତ କଥା ହେବାକୁ ଚାହେଁ । ଯାଅ, ତାକୁ ସ୍ତ୍ରୀ ବେଶରେ ମୋ ପାଖକୁ ନେଇ ଆସ । "ରାତି ଅନେକ ବିତିଗଲା ପରେ ହୀର୍‌ର ମାଉସୀ ପିଉସୀ ସବୁ ତା' ପାଖରୁ ଉଠିଲେ । ହୀର୍ କେବଳ ମାତ୍ର କେତେଜଣ ସଖୀମାନଂକ ସାଂଗରେ ରହିଗଲା ପରେ ରାନ୍‌ଝା ସ୍ତ୍ରୀ ବେଶ ହୋଇ ହୀର୍ ପାଖକୁ ଆସିଲା । ନାରୀବେଶ ଓ ତା' ସାଂଗକୁ ମୁହଁର ବିଷଣ୍ଣତା ଯୋଗୁ ରାନ୍‌ଝାର ରୂପ ଆହୁରି ସୁନ୍ଦର ଦିଶୁଥାଏ । ହୀର୍ ରାନ୍‌ଝାକୁ କହିଲା, "ମୋ କଥା ମାନଯା, ମୋତେ ଏବେ ସାଂଗରେ ନେଇ ପଳାଇଚାଲ । କାଲି ଯଦି ମୋତେ ବାପା ମା' ସବାରରେ ବସାଇଦିଅଂତି, ତା'ପରେ ଆଉ କାହାର କିଛି କରିବା ପାଇଁ ନଥିବ ।" ହେଲେ ବାହାହେଲେ ଯାଇ ସାଂଗରେ ନେବା ଥିଲା ରାନ୍‌ଝାର ଆଦର୍ଶ ।

"ହୀରେ ଇସ୍‌କ ନା ମୂଲ ସ୍ୱାଦ ଦେଁଦା
ନାଲ ଚୋରୀୟାଁ ଅତେ ଉଧାଲୀୟା ଦେ ।"[2]

ହୀର୍ ଅନେକ ବୁଝେଇଲେ ସୁଦ୍ଧା ରାନ୍‌ଝା ନିଜ ଜିଦ୍‌ରେ ଅଟଳ ରହିଲା ଓ ପରଦିନ ଖେଡ଼େ ହୀର୍‌କୁ ସବାରରେ ବସେଇ ରଂଗପୁର ବାହାରିଗଲା । ହୀର୍‌ର ବାପା ଯୌତୁକରେ ବହୁତ ଗହଣା, ପୋଷାକ ଦେଲା, ତା' ସାଂଗକୁ ଅନେକ ଗାଈ ମହିଷୀ ମଧ୍ୟ ଦେଲା । କିଂତୁ ଏବେ ସମସ୍ୟା ଦେଖାଦେଲା; କାରଣ ମହିଷୀମାନେ ରାନ୍‌ଝାକୁ ଛାଡ଼ି ପାଦେହେଲେ ଆଗକୁ ଚାଲିଲେନି । ବାଧ୍ୟହୋଇ ରାନ୍‌ଝାକୁ ମଧ୍ୟ ସାଂଗରେ ପଠାଇବାକୁ ପଡ଼ିଲା । ଝଂଗଠାରୁ ରଂଗପୁରର ଦୂରତ୍ୱ ଥିଲା ପ୍ରାୟ ସତୁରି ମାଇଲ । ଖେଡ଼େ ରାସ୍ତାରେ ରହି ରହି ଶିକାର କରିକରି ଯାଉଥାଏ । ରାନ୍‌ଝା ସବାରର ପାଖେ ପାଖେ ହୀର୍‌ର ସିନ୍ଧୁକଟିକୁ ବୋହି ଚାଲି-ଥାଏ । ହୀର୍ ନିଜ ବେକର ହାରକୁ ଛିଂଡାଇଦେଇ ମୋତିଯାକ ସବାରର ବାହାରକୁ ଫିଙ୍ଗି-ଦେଲା ଓ ଇଂଗିତରେ ରାନ୍‌ଝାକୁ ମୋତିତକ ଉଠେଇ ନେବାପାଇଁ ନିର୍ଦ୍ଦେଶଦେଲା । ସେ ମୋତି ଗୁଡ଼ିକୁ ଆଞ୍ଜୁଳାରେ ଧରି ହୀର୍‌କୁ ବଢ଼େଇ ଦେଲାବେଳେ ତା' ଆଖିରେ ଜମାହୋଇଥିବା ଲୁହର ମୁକ୍ତାବିଂଦୁମାନ ଦେଖି ହୀର୍ କହିଲା :

"ଲୈଲେ ବାଂହିୟା ଜୋର ମେଁ ଲଥକ୍‌ଙ୍ଗା,
ମେରେ ବସ ଥାଁ ଗଲ ବେବସ ହୋଇ ।

---

1. ବାହା ପୂର୍ବରୁ ରୀତି ଅନୁଯାୟୀ କନ୍ୟାକୁ ଗୋଟାଏ କଣରେ ବସେଇ ଦିଆଯାଏ ।
2. ହୀର୍ ଲୁଚଛପି ଓ ଏମିତି ହରଣ କରିନେବା ଦ୍ୱାରା ପ୍ରେମର କିଛି ଆନଂଦ ରହେ ନାହିଁ ।

ଫଡ଼କେ ମାଁ ପିୟାଁ, କାଗାଆଁ ବନ୍‌ନ ତୋଗ୍ଗା,
ସାଡ୍ଡେ ନାଲ୍ କେଡ଼ୀ ଖର ଖସ ହୋଈ ।
ଜାଉଁବେ କହେ ତାଁ ମିଲାଁଗେ ଫେର ବେଲ୍ଲୀ
ହାଲ ସାଲ ତାଁ ବସ ହୋଈ ।"[1]

କିନ୍ତୁ ଯେତେବେଳେ ନୈରାଶ୍ୟ ଓ ବିଷଣ୍ଣତାର ପ୍ରଭାବ କିଛି ମାତ୍ରାରେ କମି ଆସିଲା, ହୀର୍ କହିଲା, "ବ୍ୟସ୍ତ ହେବାର କୌଣସି କାରଣ ନାହିଁ । ମୁଁ ଖେଡ଼େକୁ କେବେହେଲେ ପତି ରୂପରେ ସ୍ୱୀକାର କରିବି ନାହିଁ । ତୁ ଚଂଚଳ ଯୋଗୀ ବେଶରେ ରଂଗପୁରକୁ ଚାଲିଆ । ପ୍ରଥମରୁ ମୋ କଥା ନମାନି ତୁ ବିପଦମାନ ଡାକି ଆଣିଛୁ । ଏବେ ଆଉ ଡେରି କରିବୁନି । ସମୟକୁ ହାତଛଡ଼ା କରିବୁନି ।

[ 2 ]

ସକାଳ ଯାଇ ରଂଗପୁରରେ ପହଂଚିଲା । ସୈଦାର ବାପା ଅଜ୍ଜୁ ଅନେକ ଆନଂଦ ଉତ୍ସବର ବ୍ୟବସ୍ଥା କରିଥିଲା । ଆଗରୁ ହୀର୍‌ର ରୂପ ଚହଲ ପକାଇ ସାରିଥାଏ । ସେ ପହଂଚିବାକ୍ଷଣି ଗାଁସାରା ଲୋକ ତାକୁ ଦେଖିବାପାଇଁ ମାଡ଼ି ଆସିଲେ । କିଂନ୍ତୁ ଅତି ଅନୁଭବୀ ଦୃଷ୍ଟି ହିଁ ଦେଖିପାରିଥାଂତା ଯେ ଯେଉଁଥିପାଇଁ ହୀର୍‌ର ରୂପ ପୂର୍ବ ଅପେକ୍ଷା ଅଧିକ ଜଳି ଉଠୁଥିଲା ତା'ର କାରଣ ଆନଂଦ ନୁହେଁ—ବରଂ ତା' ପଛରେ ଥିଲା ବେଦନାର ଏକ ଅତି କ୍ଷୀଣ ଓ ଅଦୃଶ୍ୟ ଦାଗ । ଉପରକୁ ସୈଦାର ଚାଲିଚଳନ ଅତି ଚପଳ ଓ ଖାମ-ଖିଆଲି ସ୍ୱଭାବରେ ଥିଲେ ସୁଦ୍ଧା ଭିତରେ ଭିତରେ ତା'ର ହୃଦୟ ଥିଲା ଯଂତ୍ରଣାକାଂତ । ବେଲୁଚିସ୍ଥାନର ମୁରାଦର ପ୍ରେମରେ ସେ ପାଗଳୀ ହୋଇସାରିଥାଏ । ଏଣୁ ପ୍ରେମରେ ଏକା-ପ୍ରକାରର ଅନୁଭୂତି ଦେଇ ଗତି କରିଥିବାରୁ ସେ ହୀର୍‌ର ଯଂତ୍ରଣାକୁ ଲାଘବ କରିବାପାଇଁ ଚେଷ୍ଟା କଲା । ସୈଦା ଖେଡ଼େ ତେଣେ ଚେଷ୍ଟା କରୁଥାଏ ଯେ କେମିତି ହୀର୍ ତା' ସହିତ କଥାଭାଷା କରୁ; କିଂନ୍ତୁ ହୀର୍ ମୂଳରୁ ରାନ୍‌ଝାର ହୋଇସାରିଥିଲା । ଅନେକ କଥାକାରଂକ କହିବା ଅନୁସାରେ, ଯେତେ ବି ସୈଦା ହୀର୍ ନିକଟକୁ ଆସିବାପାଇଁ ଚେଷ୍ଟା କରୁଥିଲା, ତାକୁ ପଂଚପୀର ପେଲିଦେଇ କବାଡ଼ି ଦେଉଥିଲେ । ସେଥିଯୋଗୁଁ ତା' ମନ ଭିତରେ ଏତେ ଭୟ ପଶି ଯାଇଥିଲା ଯେ ସେ ହୀର୍ ଆଡ଼କୁ ଅନେଇବା ପାଇଁ ମଧ୍ୟ ସାହସ କରୁ ନଥିଲା ।

---

1. ଦେଖ୍ ରାନ୍‌ଝା, ମୁଁ ନିଜର ସମସ୍ତ ଶକ୍ତି ବ୍ୟୟ କରି ଏବେ କ୍ଳାଂତ । ଏବେ ମୋର ଆୟତ୍ତର ବାହାରକୁ କଥା ଚାଲିଯାଇଛି । ମୋର ବାପା, ମା' ଓ କାଜିମାନେ ଜୋର୍ କରି ବାଂଧି ମୋତେ ପଠେଇ ଦେଇଛଂତି । ମୋ ଉପରେ ଘୋର ଅନ୍ୟାୟ କରାଯାଇଛି । ମୋର ପ୍ରାଣମିତ ! ଯଦି ଜୀବନ ରହେ ପୁଣି ଦେଖା ହେବ, ବର୍ତ୍ତମାନ ପାଇଁ ଆମର ସମ୍ପର୍କ ଶେଷ ହେଲା ।

ଅନେକ ଦିନ ଧରି ହୀର୍‌କୁ ରାନ୍‌ଝାର କୌଣସି ଖବର ମିଳିଲା ନାହିଁ। ତା'ର ବ୍ୟସ୍ତତା ଦିନକୁଦିନ ବଢ଼ିବାକୁ ଲାଗିଲା । ଦିନ ଦିନ ଧରି ସେ ଖଟରେ ପଡ଼ିଥାଏ । ଗାଁସାରା ରାଷ୍ଟ୍ର ହୋଇ ଗଲା ଯେ, ହୀର୍‌କୁ କୌଣସି ଭୂତପ୍ରେତ ଲାଗିଯାଇଛି । ଅନେକ ଦିନ ପରେ ସୁଦ୍ଧା ଖବର ନ ମିଳିବାରୁ ହୀର୍ ଝଂଗର ସିଆଲମାନଂକ ଘରେ ବାହା ହୋଇଥିବା ଏକ ଝିଅ ହାତରେ ରାନ୍‌ଝାକୁ ତାଗିଦ୍ କରି ପଠାଇଲା ଯେ, "ବାବୁ ପ୍ରେମର ମର୍ଯ୍ୟାଦାକୁ ବୁଡ଼ାଇ ଦେ'ନା । ଚଂଚଳ ଯୋଗୀ ବେଶରେ ଚାଲିଆ ।" ହୀର୍‌ର ସଖୀମାନେ ମଧ୍ୟ ରାନ୍‌ଝାକୁ ସାହସ ଦେଲେ ଓ ଶେଷରେ ସେ ଦୀକ୍ଷା ନେବା ଉଦ୍ଦେଶ୍ୟରେ ନାଥମାନଂକର ଆସ୍ଥାନ ଥିବା ପାହାଡ଼ ଆଡ଼କୁ ବାହାରିପଡ଼ିଲା ।

ସେ ଯେତେବେଳେ ପାହାଡ଼ ଉପରେ ପହଂଚିଲା ଗୁରୁ ବାଲନାଥ ତା'ର ଯୁବାବୟସ ଓ ସୁଂଦର ରୂପକାଂତି ଦେଖି ସ୍ତବ୍ଧ ହୋଇଗଲେ । ସେଠି ଅନେକ ପିଲା ଯୋଗ ଦୀକ୍ଷା ଲାଭ ଆଶାରେ ବର୍ଷ ବର୍ଷ ଧରି ଅନବରତ ତାଂକର ସେବାରେ ରତ ଥିଲେ । କିଂତୁ ବାଲନାଥ ଯେତେବେଳେ ରାନ୍‌ଝାକୁ ତତ୍‌କ୍ଷଣାତ୍ ଯୋଗ ଦୀକ୍ଷା ଦେବାପାଇଁ ସ୍ୱୀକାର କଲେ ଓ ରାନ୍‌ଝା ସକାଶେ କାନବଲା ତିଆରି କରିବାପାଇଁ ନିଜର ଶିଷ୍ୟମାନଂକୁ ଆଦେଶ ଦେଲେ ସେମାନେ ଇର୍ଷାରେ ଜଳିଗଲେ । କିଂତୁ ସର୍ବଜ୍ଞ ଗୁରୁଂକର ହୃଦୟ ରାନ୍‌ଝାର ଦୃଢ଼ତାକୁ ଚିହ୍ନି ସାରିଥିଲା । ତାଂକୁ ଜଣାଥିଲା ଯେ ଅନାବିଳ ପ୍ରେମନିଷ୍ଠା ରାନ୍‌ଝାକୁ ଅନେକ ଆଗରୁ ଯୋଗର ଚରମ ପର୍ଯ୍ୟାୟକୁ ପହଂଚାଇସାରିଛି । ସେ ତ ମୂଳରୁ ଯୋଗୀ, ଏବେ କେବଳ ଯୋଗୀବେଶର ମାତ୍ର ଆବଶ୍ୟକତା ଥିଲା । ତଥାପି ମଧ୍ୟ ଦୀକ୍ଷା ଦେବା ସମୟରେ ବାଲନାଥ ପାରଂପରିକ ରୀତି ଅନୁଯାୟୀ ଯୋଗର ମର୍ଯ୍ୟାଦା ବିଷୟ ବୁଝାଇ ଦେଇ କହିଲେ, "ବଡ଼ଡ଼ୀ ମାଉଁ ବରାବର ଜାଣନୀ ଆଁ, ଅତେ ଭୈନ ବରାବର ଛୋଟଡ଼ୀ ହିଁ ।"[1] କିଂତୁ ରାନ୍‌ଝା ସ୍ପଷ୍ଟ ଭାବରେ ଜଣାଇଦେଲା, ମୁଁ ଏଇ ସର୍ତ୍ତକୁ ମାନିପାରିବି ନାହିଁ । କାରଣ ମୁଁ ତ ହୀର୍ ପାଇଁକି କେବଳ ଯୋଗ ଗ୍ରହଣ କରିଛି । ଏହା ଶୁଣି ବାଲନାଥଂକ ହୃଦୟ ଦ୍ରବୀଭୂତ ହୋଇଉଠିଲା ଓ ସେ ରାନ୍‌ଝାକୁ କାଠିମାଳି, ଟୋପି, ହାତବଲା, ଖପରା ଓ ଚଂଦନଲୀ ଦେଇ ଆସ୍ଥାନରୁ ବିଦାକଲେ । ରାନ୍‌ଝା ଆଖି ସାମ୍ନାରୁ ଓହରିଗଲା ପରେ ବାଲନାଥ ଯେଉଁ ଶିଳା ଉପରେ ବସେଇ ରାନ୍‌ଝାକୁ ଯୋଗର ଜ୍ଞାନ ଦେଇଥିଲେ, ସେ ସେଇ ଶିଳାକୁ ପ୍ରଣାମ କଲେ । ସେ ଶିଳା ଖଂଡଟି ଏବେ ମଧ୍ୟ ଯୋଗୀମାନଂକର ପାହାଡ଼ରେ ରହିଛି ଓ ସେଠାକୁ ଆସୁଥିବା ଯାତ୍ରୀମାନେ ଏବେ ମଧ୍ୟ ତାକୁ ପ୍ରଣାମ କରଂତି ।

ନୂଆ ବେଶରେ ରାନ୍‌ଝା ପାହାଡ଼ରୁ ଓହ୍ଲାଇଲା ବେଳକୁ ତା'ର ରୂପର ଜ୍ୟୋତିରେ ଦେଖିବା ଲୋକର ଆଖି ଝଲସି ଯାଉଥିଲା । ରାନ୍‌ଝା ନିଜର ଗଂତବ୍ୟ ପଥ ଅତିକ୍ରମ କରି

1. ନିଜଠାରୁ ବୟସରେ ବଡ଼ ସ୍ତ୍ରୀ ଲୋକମାନଂକୁ ମା' ସମାନ ଜ୍ଞାନ କରିବୁ ଓ ନିଜଠାରୁ ସାନମାନଂକୁ ଭଉଣୀ ବୋଲି ଭାବିବୁ ।

ରଂଗପୁରରେ ପହଂଚଲା । ସେଠି ଜଣେ ମେଣ୍ଢା ଚରାଉଥିଲା । ସେ ରାନ୍‌ଝାକୁ ଦେଖିବାକ୍ଷଣି ଚିହ୍ନିପାରିଲା । ପ୍ରଥମେ ତ ରାନ୍‌ଝା ମୋଟେ ହେଲେ ଧରାଛୁଆଁ ଦେଲାନି । କିଂତୁ ସ୍ବରଣ-କାରର ମୁହଁରୁ ନିଜ ପ୍ରେମର ଠିକଣାଖି ବିବରଣୀ ଶୁଣି ସେ ବିସ୍ମିତ ହୋଇଗଲା । ସେ ଚିଂତା କରିବାକୁ ଲାଗିଲା ଯେ, କେମିତି ଭଲା ତାଂକର ପ୍ରେମ କାହାଣୀ ଖଂଡମଂଡଳଟା-ଯାକ ବ୍ୟାପିଯାଇଛି । ତା'ପରେ ସେ ସ୍ବରଣକାରଠାରୁ ରଂଗପୁରର ସମସ୍ତ ଖବର ଅଂତର ବୁଝିସାରି ଗାଁ ଭିତରେ ପହଂଚିଗଲା । ସେ ପାଣି ପିଇବା ପାଇଁ ଗାଁର କୂଅ ପାଖରେ ଯେମିତି ଅଟକିଗଲା, ତା'ର ମୋହନ ରୂପ ଦେଖି ଗାଁ ଝିଅ ସବୁ ସ୍ତବ୍ଧ ହୋଇଗଲେ । ଦେଖୁ ଦେଖୁ ରାନ୍‌ଝାର ଆଖପାଖରେ ବିବାହିତା ଓ କୁମାରୀ ଝିଅମାନଂକର ଭିଡ଼ ଜମା ହୋଇଗଲା । ତାଂକ ଭିତରେ ହୀର୍‌ର ନଣଂଦ ସେହିତୀ ମଧ୍ୟ ଥାଏ ।

"ଘର ଆକେ ନନାନ ନେ ଗଲ୍ଲ କୀତୀ,
ଭାବୀ ଇକ ଯୋଗୀ ନବାଁ ଆୟା ନୀ ।
କନ୍ନୀ ଉସଦେ ଦରଶନୀ ମୁଁଦରାଁ ନେ,
ଗଲ ହେଁ କଲ ଅଜବ ସୁହାୟା ନୀ ॥
ଫିରେ ଭଟକଦା ବିଚ୍ ହବେଲିୟାଁ ଦେ,
କୋଇ ଉସନେ ଲାଲ ବେଁଜାୟା ନୀ ।"[1]

ସେହିତୀର କଥା ଶୁଣି ହୀର୍‌ର ହୃଦୟ ଧକ୍ ଧକ୍ ହେବାକୁ ଲାଗିଲା । ସେ ଭାବିଲା, ରାନ୍‌ଝା ବୋଧହୁଏ ଯୋଗୀ ବେଶରେ ଆସିଯାଇଛି । ତା'ର ହୃଦୟ ଚକ୍ର ପରି ଘୂରିବାକୁ ଲାଗିଲା । ତା'ର ଦେହର ପ୍ରତ୍ୟେକଟି ଲୋମକଣା ରାନ୍‌ଝା ପାଇଁ ଜର୍ଜରିତ ହୋଇ ଉଠିଲେ । ହୀର୍‌ର ଏଇ ଅବସ୍ଥାକୁ ଦେଖି ସୟଦ୍ ବାରିସଶାହ ଅତ୍ୟଂତ କୋମଳ ଓ ବେଦନାମୟ ଭାଷାରେ ବର୍ଣ୍ଣନା କରିଛଂତି :

"ମୁଠୀ ମୁଠୀ ଏ ଗଲ୍ଲ ନା କରେ ଭୈନା,
ମୈଁ ତେ ସୁଣଦେୟା ହୀ ଲୁଡ଼ ଗଈ ଜେ ନୀ ।
ତୁ ସାଁ ଏ ଜଦୋକଣୀ ଗଲ୍ଲ କୀତୀ,
ମେରେ ଧୂର କଲେଜଡ଼େ ପଈ ଜେ ନୀ ।
ଫିରେ ପୋସ୍ତ, ଧତୁରା ତେ ଭଂଗ ପୀଂଦା,
ଭୈଡ ଉସନେ ମୁଲ୍ଲ କ୍ୟୋଁ ଲଈ ଜେ ନୀ ।

---

1. ଘରକୁ ବାହୁଡ଼ିଯାଇ ନଣଂଦ କହିଲା, ଭାଉଜ, ଜଣେ ନୂଆ ଯୋଗୀ ଆସିଛି । ତା' କାନରେ ସେ ବଳା ପିନ୍ଧିଛି, ବେକରେ କଂଠା ଖୁବ୍ ମାନୁଛି । ସେ କୋଠା-ମାନଂକ ମଝିରେ ଏଭଳି ଘୂରି ବୁଲୁଛି ଯେମିତି କି କୌଣସି ଅମୂଲ୍ୟନିଧି ହଜାଇ ଦେଇଛି ।

ଜିସ ଘରିଁ ଦା ପୁତ୍ର ଫକୀର ହୋୟା
ଦଶ୍ରା ରବ୍‌ବ ଦା ଓହ ସହ ଗଈ ଜେ ମା ।
ଜିସଦେ ଭନ୍ନଡ଼େ ୟାର ହୋ ଦେ କନ୍ନ ପାଟେ,
ଓହ ତାଁ ନ ଡଡ୍‌ଡ୍‌ଗୀ ଚୌଡ଼ ଗଈ ଜେ ମା ।...''[1]

କିଂତୁ ଇଏତ ହୀର୍‌ର ଅନୁମାନ ମାତ୍ର ଥିଲା । ସେ ବାର ବାର ନିଜ ନିଜ କହୁଥାଏ, "ପ୍ରଭୁ ନ କରଂତୁ, ଇଏ ଯଦି ରାନ୍‌ଝା ହୋଇଥିବ, ତା'ହେଲେ ମୁଁ ସରିଗଲି । ସେ ମୋତେ ଆଉ କେଉଁଠି ହେଲେ ରଖେଇ ଦେଲାନି ।" ସେହିତାକୁ ମଧ୍ୟ ଏଯାଏଁ ସେ ରାନ୍‌ଝା ବୋଲି ଜଣା ନଥିଲା । ପରଦିନ ରାନ୍‌ଝା ଯେତେବେଳେ ଖେଡ଼ା ଘରକୁ ମଂଗଳ କାମନା କରିବାପାଇଁ ଆସିଲା, ସେହିତା ସହିତ ତା'ର ଖୁବ୍ ଜୋର୍‌ରେ ପାଟିଗୋଳ ହେଲା । ହୀର୍ ସେପଟେ ପଛ କରି ସବୁ ଶୁଣୁଥାଏ । ଶେଷରେ ସେହିତା ରାନ୍‌ଝାକୁ ପରୀକ୍ଷା କରିବାପାଇଁ ବାଜି ଲଗାଇଲା, 'ଯଦି ସତରେ ତୁ ପ୍ରକୃତ ଯୋଗୀ ହୋଇଥିବୁ, ତା'ହେଲେ ମୋ ଭାଉଜକୁ କି ରୋଗ ହୋଇଛି କହ । ରାନ୍‌ଝା ହୀର୍ ଓ ମହିଷୀ ଚରଉଥିବା ଚାକରର କାହାଣୀ ଶୁଣାଇବା ଆରଂଭ କଲା ଓ କଥାଛଳରେ ସେହିତା ଓ ମୁରାଦର ପ୍ରେମଆଡ଼କୁ ମଧ୍ୟ ଇଂଗିତ କଲା । ଏହା ଶୁଣି ସେହିତା ଟିକିଏ ନରମ ହେଲା; କିଂତୁ ମିଛରେ ଚାକରାଣୀକୁ ପାଟିକରି କହିଲା, "ଆରେ, ୟା'କୁ ଭିକ ଦେ, ଆମର ପିଛା ଛାଡ଼ୁ ।" ଚାକରାଣୀ ମୁଠାଏ ଚାଉଳ ନେଇ ଆସିଲା; କିଂତୁ ସେ ଯେତେବେଳେ ରାନ୍‌ଝା ଆଡ଼କୁ ଭିକ ବଢ଼େଇବାକୁ ଲାଗିଲା, ରାନ୍‌ଝା ଜାଣିଶୁଣି ଭିକ୍ଷା ପାତ୍ରଟିକୁ ହାତରୁ ଛାଡ଼ିଦେଲା । ଚାଉଳତକ ଅଗଣାରେ ବିଞ୍ଚେଇ ହୋଇ ପଡ଼ିଲା । ରାନ୍‌ଝା ହୀର୍ ସହିତ କଥା ହେବାପାଇଁ ସୁଯୋଗ ଲାଭ ଆଶାରେ ଏକଥା କରିଥିଲା । ହୀର୍ ଯୋଗୀ ଆଡ଼କୁ ବୁଲିପଡ଼ିଲା ଓ ରାନ୍‌ଝାକୁ ସାମ୍ନାରେ ଦେଖି ତା'ର ପ୍ରେମ ନିଷ୍ଠା ପ୍ରତି କୃତକୃତ୍ୟ ହୋଇଉଠିଲା । ହୀର୍ ସେହିତା ଆଗରେ ନିଜର ହୃଦୟ ଖୋଲି ଅଂତରର ସବୁକଥା ଜଣାଇଦେଲା । ନଣଂଦ ଭାଉଜ ଉଭୟେ ମିଶି ଆପଣା ପ୍ରେମକୁ ସଫଳ କରିବାର ଉପାୟ ଚିଂତା କରିବାକୁ ଲାଗିଲେ ।

ରାନ୍‌ଝା କାଲାବାଗରେ ଆସ୍ଥାନ ଜମେଇଥିଲା । ସେ ଯୋଗୀମାନଂକ ପରି କେତେ-ବେଳେ ଶାଂତ ବ୍ୟବହାର କରୁଥିଲା ତ ପୁଣି କେତେବେଳେ ଅତି ବିକଟାଳ ରୂପ ଧାରଣ

1. ଭଉଣୀ, ମୁଠା ମୁଠା କଥା କହନା । ମୁଁ ତ ଶୁଣି ଶୁଣି ସରିଗଲିଣି । ତୁ ଏଇକଥା କହିଲା ବେଳକୁ କଥା ଯାଇ ମୋ କଲିଜାରେ ଲାଗିଯାଇଛି । ପୋସ୍ତ, ଧାତୁରା ଓ ଭାଂଗ ପିଇ ପିଇ ଯୋଗୀ କାହିଁକି ମୃତ୍ୟୁକୁ ଆଦର ନେଇଛି ? ଯେଉଁ ମା'ର ପୁଅ ଫକୀର ପାଲଟିଗଲା, ସେଇ ମା' ଆଲ୍ଲାଂକର ଇଚ୍ଛାକୁ କେମିତି ସହନ କରିପାରିଲା ? ଯାହାର ସୁଂଦର ପ୍ରେମିକର କାନ ଫୋଡ଼ା ହୋଇଛି, ସେଇ ଝିଅ ତ ଜାଣ ନଷ୍ଟ ହୋଇଗଲା ।

କରୁଥିଲା । ସେ ଅନେକ ଲୋକଙ୍କର ମନସ୍କାମନା ପୂର୍ଣ୍ଣ କରୁଥିଲା ଓ ଅନେକଙ୍କୁ ଆଧାସ୍ୱ ଉଡ଼ାଇ ଗୋଡ଼ାଉଥିଲା । ଶହଶହ ନାରୀ ତାକୁ ନିଜନିଜର ମନର ଦୁଃଖ ଜଣାଉଥିଲେ ଓ ଦୁଃଖ ଦୂର କରିବାପାଇଁ ଉପାୟ ପଚାରୁଥିଲେ । ଶେଷରେ ହୀର୍ ମଧ୍ୟ ନିଜର ରୋଗ ଦେଖାଇବା ବାହାନାରେ ରାନ୍‌ଝା ସହିତ ସାକ୍ଷାତ କରିବାପାଇଁ ବାହାରିଲା । ଦେହସାରା ବୋଲି ରାନ୍‌ଝା ଧୁନି ପାଖରେ ବସିଥାଏ । ସେ ହୀର୍‌କୁ ଦେଖି ଛିଡ଼ା ହେଲା ଓ ହୀର୍—

"ଅବ୍‌ବଲ୍ ପୈର ପକଡ଼େ ଏତକାଦ କର କେ
ଫେର ନାଲ୍ କଲେଜେ ଦେ ଲଗ୍‌ଗ ଗଈ ।
ନବାଁ ତୌର ଅଜୂବେ ଦା ନଜର ଆୟା,
ଦେଖୋ ଜଲ୍ ପତଂଗ ତେ ଅଗ୍‌ଗ ଗଈ ।
କହୀ ଲଗ ଗଈ, ଚିନଗ ବଗ୍‌ଗ ଗଈ,
ଖବର ଜଗ୍‌ଗ ଗଈ, ବଜ ଧ୍ରଗ ଗଈ ।
ସ୍ୟାଲେ ଠଗ୍‌ଗାଂ ଦୀ ରେବଡ଼ୀ ହୀର୍ ଜଟ୍‌ଟୀ
ମୂଁହ ଲଗଦେସ୍ୟୋଂ ଯୋଗୀ ନୂଁ ଠଗ୍‌ଗ ଗଈ ।
ଅଗ୍‌ଗେ ଧୂଆଁ, ଧୂଖାୟା ଯୋଗୀସ୍ୟୋଂ ଦା,
ହୁନ ଫୂକ କେ ଝୁଗଡ଼େ ଅଗ୍‌ଗ ଗଈ ।"[1]

ହୀର୍ କାଲବାଗରୁ ଘରକୁ ଫେରିଲାବେଳେ ସୈତୀକୁ କହିଲା : "ଏମିତି ଏକ ଉପାୟ କରିବା ଯେମିତିକି ତୋତେ ତୋ'ର ମୁରାଦ ମିଳିଯିବ ଓ ମୁଁ ମୋର ପ୍ରିୟତମକୁ ପାଇ-ଯିବି । ଆମ ଦୁହିଁଙ୍କର ଯୌବନ ଗଡ଼ିଯାଉଛି । ନିତିଦିନ ମୋର କାଲବାଗ ଯିବା ଠିକ୍ ନୁହେଁ । ଏମିତି ଏକ କୌଶଳ କରିବା ଯେମିତିକି ଘରେ ରହି ପ୍ରିୟତମର ଦର୍ଶନ ମିଳିଯିବ ।…"

ଯା'ହେଉ ଅନେକ ବିଚାର ବିମର୍ଶ ପରେ ହୀର୍ ଓ ସୈତୀ ଏକ ନିଷ୍ପତ୍ତି ନେଲେ । ସୈତୀ ନିଜର ମା'ଙ୍କୁ ରାଜି କରେଇନେଲା ଯେ ହୀର୍‌ର ସ୍ୱାସ୍ଥ୍ୟର ହିତ ଦୃଷ୍ଟିରୁ ତା'ର ବାହାରେ ବୁଲାବୁଲି କରିବା ନିତାନ୍ତ ଆବଶ୍ୟକ । ପରଦିନ ସକାଳୁ ସୈତୀ ଓ ହୀର୍, ତାଙ୍କର ସାଙ୍ଗ-ମାନଙ୍କ ମେଳରେ କୂଅକୁ ଗଲେ । ହୀର୍ ଗଛରୁ ଏକ କଣ୍ଟା ଭାଙ୍ଗି ନିଜ ପାଦରେ ଫୋଡ଼ି ଦେଲା ଓ ତା'ପରେ ସୈତୀ ଓ ତା'ର ବାନ୍ଧବୀମାନେ ଚିତ୍କାର କଲେ ଯେ ହୀର୍‌କୁ ସାପ

1. ପ୍ରଥମେ ଶ୍ରଦ୍ଧା ସହକାରେ ପାଦ ଛୁଇଁଲା, ତା'ପରେ ଛାତିରେ ଲାଗିଗଲା । ଏକ ଅଭିନବ ଆତଙ୍କିତ କଥା ଦେଖାଗଲା, ଅଗ୍ନି ପତଙ୍ଗ ପାଇଁ ଜଳିଗଲା । ଏକ ଅଗ୍ନି କଣା ଏଭଳି ଭାବରେ ଜଳି ଉଠିଲା ଯେ, ପୃଥିବୀ ସାରା ରାଷ୍ଟ୍ର ହୋଇଗଲା । ଡିଣ୍ଡିମ ବାଜିବାକୁ ଲାଗିଲା ଯେ ଜଟଙ୍କର ସର୍ଦ୍ଦାର ହୀର୍ ଜଟାଧାରୀ ଯୋଗୀ ଆସିବାକ୍ଷଣି ତାକୁ ଠକେଇ ଦେଇ ସାଙ୍ଗରେ ନେଇଗଲା । ଆଗରୁ ତ ଯୋଗୀର ଗୋଟାଏ ଧୂନି ଜଳା ହୋଇଥିଲା, ଏବେ ଏଇ ଅଗ୍ନି ସାରା ଘରକୁ ଜାଳିଦେଲା ।

କାମୁଡ଼ି ଦେଇଛି । ହୀର୍ ଜିଭକାମୁଡ଼ା ଭୂଇଁରେ ପଡ଼ିଗଲା । ସେ କିଛି ସମୟ ଧରି ନିଃଶ୍ୱାସ ବଂଦ କରି ପଡ଼ି ରହିବା ପରେ ଦେଖୁ ଦେଖୁ ଦେହର ରଂଗ ବଦଳିଗଲା । ନିମିଷକେ ଗାଁଟାଯାକ ଲୋକ ଜମା ହୋଇଗଲେ । ହୀର୍‌କୁ ଖଟ ଉପରେ ଶୁଆଇ ଘରକୁ ନିଆଗଲା । ଅନେକ ଗୁଣି ଗାରେଡ଼ି କଲା ପରେ ମଧ୍ୟ କିଛି ଲାଭ ହେଲାନି । ସୈଦା କହିଲା କାଲିବାଗରେ ଜଣେ ଯୋଗୀ ଆସି ରହିଛି । ସେ ସିଦ୍ଧବାନ୍ ପୁରୁଷ ଓ ଗଭୀର ସାଧନା କରିଥିବାର ମନେ ହେଉଛି । ଝିଅମାନେ ସୈଦାକୁ ଯୋଗୀ ପାଖକୁ ପଠାଇଦେଲେ । ରାନ୍‌ଝା ଆଧାରୀ ଉଠେଇ ସୈଦା ଉପରକୁ ଏପରି ଝାଂପି ପଡ଼ିଲା ଯେ ସେ ଭୟରେ ଥରହର ହୋଇ ଘରକୁ ଫେରି-ଆସିଲା । ଶେଷକୁ ସୈଦାର ବାପା ଅଜ୍ଜୁ ନିଜେ ଯୋଗୀ ପାଖକୁ ଗଲା । ଯୋଗୀ ମଧ୍ୟ ମନେ ମନେ ଏହା ଚାହୁଁଥିଲା । ଏଣୁ ସେ ସାଂଗେ ସାଂଗେ ମାନିଗଲା । ତାପରେ:—

"ମଂତର ଇକ ତେ ପୁତଲୀୟାଁ ଦୋ ଉଡ଼୍‌ଡନ,
ଅଲ୍ଲା ବାଲେୟାଁ ଖେଲ ରଚାୟା ଈ ।
ଜିସକୁ ଶାହ ହୋୟା ଅଜ ଆନ ଲଡଥେ
ତଂବୁ ଆଣ ଉଧାଲୁଆଁ ଲୟା ହେ ।[1]

(ବାରିସଶାହ)

ସୈଦା ସବୁ ବନ୍ଦୋବସ୍ତ ନିଜ ହାତକୁ ନେଇ ଗାଁ ବାହାରେ ମେହଂତର ଘରେ ଯୋଗୀର ଆସ୍ଥାନ ବ୍ୟବସ୍ଥା କରିଦେଲା । ଯୋଗୀ ମହାରାଜ କହିଲେ, କୋଠରିରେ କେବଳ କନ୍ୟା ରହିବ, କିଂବା ଆଉ ଜଣେ କୁମାରୀ ଝିଅ ସାଂଗରେ ରହିପାରେ । ବାକି ସମସ୍ତେ ଚାଲି-ଯାଆଂତୁ । କନ୍ୟାକୁ ଏକ ବିଷାକ୍ତ ନାଗସାପ ଦଂଶନ କରିଛି ।

"ନା ଏ ଫନିଅର ନା ଏ ଡଲୟର
ନା ବୈଶକ କୌଡ଼ୋଁ ହୋଈ ।
ନା ଏହ କକ୍‌କଡ଼ ନା ସଂଗ ଚୂଡ଼ନ,
ଏନା ବଲ୍ଲେ ନା କୋଈ
ଏ ତାଁ ଖାଧୀ ଜୁଟୀୟାଲେ ବସୀୟର
ଯେ ଧୌଁ ଜୁଟ୍‌ଟଣ ମୁଶକଲ ହୋଈ ।"[2]

(ଦମୋଦର)

---

1. ଗୋଟାଏ ମାତ୍ର ମଂତ୍ର; ତଂବୁ ଦୁଇଟିଯାକ ଡୋଲା ନାଚୁଥିଲେ । ଆଲ୍ଲାଂକର ଏ କି ଖେଳ ! ଗୁ ଘୁଂଚପା’ ଶାହ ଆଜି ବିରାଜମାନ କରିଛଂତି, ଯିଏ ନାରୀମାନଂକୁ ଫୁସୁଲେଇ ନେଇଯାଂତି ସେ ଆଜି ତଂବୁ ପକାଇ ଦେଇଛଂତି ।
2. ଏହା ଫନୀୟର ନୁହେଁ, ଏହା ଡଲୟରୁ କିଂବା ବୈଶକ ମଧ୍ୟ ନୁହେଁ । ଏହା ଶଙ୍ଖଚୂଡ଼ କିଂବା କକ୍‌କଡ଼ ସାପ ମଧ୍ୟ ନୁହେଁ । ଯାଂକୁ ତ ଚୁଲି ଥିବା ବିଷିଅର ସାପ କାମୁଡ଼ିଛି । ମୋ ପାଇଁ ବିଷକାଢ଼ିବା ସହଜ ମନେ ହେଉନାହିଁ ।

ଏହା ଶୁଣି ଲୋକମାନେ ଭୟରେ ସେଠାରୁ ଚାଲିଗଲେ । କେବଳ ହୀର୍, ସୈଦା ଓ ଯୋଗୀ ସେଠାରେ ରହିଗଲେ । ରାତିଅଧ ବେଳକୁ ରାନ୍ଝା ପଂଚପୀରଙ୍କୁ ସ୍ମରଣ କଲା । ପୀର୍ ବହାଉଦ୍ଦୀନ ଜକରିୟା ଧଡ଼କନା କାଂଥକୁ ଭାଂଗି ବାଟ ଉନ୍ମୁକ୍ତ କରିଦେଲେ । ଯେମିତି ହୀର୍ ଓ ରାନ୍ଝା କୋଠରିରୁ ବାହାରି ଚାଲିଯିବାକୁ ବସିଲେ ସୈଦା କହିଲା: "ମୋତେ ମଧ୍ୟ ମୋ ପ୍ରିୟତମ ସାଥିରେ ମିଳନ କରେଇଦିଅ ।" ରାନ୍ଝା ପୁଣି ପଂଚ-ପୀରଙ୍କୁ ସ୍ମରଣ କଲା । ବେଲୁଚିସ୍ଥାନର ମୁରାଦର ଦ୍ରୁତଗାମୀ ଓଟଣୀ ଛମଛମ ଶବ୍ଦ କରି ପହଂଚିଗଲା ।

[ 3 ]

ସକାଳ ହେଲାପରେ ଖେଡ଼ରେ ପରିବାର ଦୁଇ ଦଳରେ ବିଭକ୍ତ ହୋଇ ହୀର୍ ଓ ସୈଦା ପଛରେ ଅନୁଧାବନ କଲେ । ପ୍ରଥମ ଦଳ ବେଲୁଚିସ୍ଥାନବାସୀମାନଂକ ଠାରୁ ମାଡ଼ଖାଇ ହାତଗୋଡ଼ ଭାଂଗି ଲଂଗୁଡ଼ ଜାକ ଫେରିଆସିଲେ; କିଂତୁ ଅନ୍ୟ ଦଳର ଲୋକେ ରାନ୍ଝାକୁ ଧରି ପକେଇଲେ । ସେମାନେ ପିଟିପିଟି ରାନ୍ଝାକୁ ଦରମରା କରି ପକାଇଲେ ଓ ହୀର୍‌କୁ ସାଂଗରେ ଘୋଷାଡ଼ି ନେଲେ । ରାନ୍ଝା ଯାଇ ରାଜା ଅଦଲୀଂକ ପାଖରେ ଗୁହାରି କଲା । ରାଜା ଅଦଲୀଂକ ଆଦେଶରେ ହୀର୍ ଓ ଖେଡ଼େ ପରିବାରର ଲୋକମାନଂକୁ ବଂଧାହୋଇ ଅଣାଗଲା । ସେମାନେ କହିବାକୁ ଲାଗିଲେ, "ମହାରାଜ, ଇଏ ଜଣେ ପ୍ରତାରକ । ଆମେ ତାକୁ ସାପୁଆକେଳା ଭାବି ଆମ ଘରର ବୋହୂକୁ ଠିକ୍ କରିବା ପାଇଁ ଡାକିଥିଲୁ । କିଂତୁ ଇଏତ ଝିଅକୁ ନେଇ ପଳେଇଗଲା ।" ଏହା ଶୁଣି ରାଜା ଖେଡ଼େ ହାତରେ ହୀର୍‌କୁ ସମର୍ପି ଦେଲେ । ଏଭଳି ଅନ୍ୟାୟ ହେବା ଦେଖି ରାନ୍ଝା ହତାଶାରେ ଚିତ୍କାର କଲା । ଫଳରେ ସହରର ଚାରିଆଡ଼େ ନିଆଁ ଲାଗିଗଲା । ରାନ୍ଝାର ଚମତ୍କାରିତା ଦେଖି ତା'ର ସଚ୍ଚୋଟ ପଣିଆ ପ୍ରତି ରାଜା ନିଂସନ୍ଦେହ ହେଲେ । ସେ ହୀର୍‌କୁ ରାନ୍ଝା ହାତରେ ସମର୍ପିଦେଲେ । ଖେଡ଼େ ପରିବାର କାଂଦିବୋବେଇ ରଂଗପୁରକୁ ଫେରିଗଲେ ।

ହୀର୍ ଓ ରାନ୍ଝା କିଛିଦିନ ବଣ ପାହାଡ଼ ଅଂଚଳରେ ଘୂରିବୁଲିବା ପରେ ଶେଷରେ ଝଂଗକୁ ଫେରିଯିବା ପାଇଁ ସ୍ଥିର କଲେ । ସେମାନେ ଝଂଗର ସୀମା ନ ମାଡ଼ୁଣୁ ଗାଁର ଚାରଣକାରୀମାନେ ଯାଇ ଚୁଚକ ଘରେ ଖବର ଦେଇଦେଲେ । ସେମାନେ ଆସି ହୀର୍ ଓ ରାନ୍ଝାକୁ ସାଥିରେ ଘରକୁ ପାଛୋଟି ନେଲେ । ରାନ୍ଝାର କାନରୁ ବଲା କାଢ଼ିନେଲେ ଓ ତା'ର ଜଟାତକ ମୁଂଡରୁ ସଫା କରିଦେଲେ । ତାକୁ ଦୁଧଭାତ ଖାଇବା ପାଇଁ ଦେଲେ ଓ ବସିବାପାଇଁ ରଂଗୀନ ପଲଂକ ବଛେଇ ଦେଲେ । ହେଲେ ଏ ସବୁ ସ୍ନେହ ସତ୍କାର ଲୋକ-ଦେଖାଣିଆ ଥିଲା । ମନ ଭିତରେ ଦୁର୍ନାମର ଭୟ ସମସ୍ତଂକୁ ଖାଇଯାଉଥାଏ । ଶେଷରେ ସେମାନେ ଷଡ଼ଯଂତ୍ରର ବ୍ୟୂହ ରଚନା କଲେ ଓ ରାନ୍ଝାକୁ କହିଲେ, "ଏମିତି ଭଲ ଦିଶୁନି ।

ତୁମେ ତଖ୍‌ତହଜାରାରୁ ବର ବେଶରେ ବରଯାତ୍ରୀ ନେଇ ଆସ ଓ ବିଧି ଅନୁଯାୟୀ ହୀର୍‌କୁ ବିବାହ କରି ନେଇଯାଅ ।" ରାନ୍‌ଝା ସାଂଗେ ସାଂଗେ ତଖ୍‌ତହଜାରା ଚାଲିଗଲା । ରାସ୍ତା ସାରା ସେ ଭାବୁଥାଏ ଯେ ଏବେ ଯାଇ ସେ ଭାଉଜମାନଂକର କଟୂକ୍ତି ପ୍ରତିଶୋଧ ନେବ । ହେଲେ କ'ଣ ହେବ ସେ ଯା' ଭାବିଥିଲା ତାହା ହେବାର ନଥିଲା ।

ସେ ଯିବା ପରେ ବାପ ମା' ବିଷ ଦେଇ ହୀର୍‌କୁ ମାରିଦେଲେ ଓ ରାନ୍‌ଝା ପାଖକୁ ଖବର ପଠେଇଲେ ଯେ ଆମର ତ ଅନ୍ୟ ପ୍ରକାରର ଇଚ୍ଛା ଥିଲା । କିଂତୁ ପ୍ରଭୁଂକର ବିଧାନ ତା' ନଥିଲା । ରାନ୍‌ଝାକୁ ଚିଠିଦେବା ସମୟରେ ପତ୍ରବାହକ କହିଁ କହିଁ ହୋଇ କାଂଦିବାକୁ ଲାଗିଲା । ସକେଇ ସକେଇ ସେ କହିଲା ଯେ ହୀର୍ ଆଉ ଏଇ ସଂସାରରେ ନାହିଁ ।

ଏକଥା ଶୁଣିବାମାତ୍ରେ ରାନ୍‌ଝା ବ୍ୟଥିତ ହୋଇ ଚିତ୍କାର କରି ଉଠିଲା ଓ ପରମୁହୂର୍ତ୍ତରେ ଜୀବନ ହାରିଦେଲା ।

[ 4 ]

ହୀର୍‌ର କାହାଣୀ ସର୍ବପ୍ରଥମେ ଦାମୋଦର କବି ଲେଖିଥିଲେ । ସେ ଝଂଗ ଗ୍ରାମର ପଟୂଆରୀ ଥିଲେ ତ ସେ ଅନେକ ଜାଗାରେ ଲେଖିଛଂତି, "ଆଁଖ ଦାମୋଦର ଅସାଁ ଅଖୀ ଡିଟ୍ଠା ଜୋ ସିର ସଲେଟୀ ଦେ ବୀତ ।[1] ଦାମୋଦର ହିଂଦୁ ପରଂପରାକୁ ରକ୍ଷା କରି କାହାଣୀର ପରିଣତିକୁ କରୁଣ କରିନାହାଂତି । ତାଂକ କାହାଣୀର ଉପସଂହାରରେ ହୀର୍ ଓ ରାନ୍‌ଝା ହଜ୍ କରିବା ଉଦ୍ଦେଶ୍ୟରେ ମକ୍‌କା ଚାଲିଯାଆଂତି । ଏମିତି ବି ଦେଖିବାକୁ ଗଲେ ଦାମୋଦରଂକର ରାନ୍‌ଝା ବାରିସଶାହଂକର ରାନ୍‌ଝା ପରି ହୃଷ୍ଟପୁଷ୍ଟ, ବଳିଷ୍ଠ ଓ ପଂଜାବୀ ମନେ ହୁଏନାହିଁ । ବରଂ ସେ କୃଷ୍ଣ ଭଗବାନଂକ ପରି ମୁରଲୀ ମନୋହର ଓ ବାଲଗୋପାଳ ମନେହୁଏ । ଯେତେବେଳେ କେଉଟୁଣୀ ମସ୍‌ଜିଦକୁ ଯାଏ ସେଠି ରାନ୍‌ଝାର ଲୋଭନୀୟ ରୂପକୁ ଦେଖି କହେ,

ଦେଖ ବିକାଣୀ ଝୀଁବର ଆନୀ,
କଦମ ଉଠୀଂଦସ ନାହିଁ ।
ହେ ! ଜେ ଚୁଖ ବଜେରା ହୋବେ
ତାଁ ଆଗ ଜପ୍ୟାହି କରାଁଈ ।[2]

---

1. କବି ଦାମୋଦର କହେ, ସଲେଟୀ (ହୀର୍) ଯାହା ଅଂଗେ ନିଭାଇଛି ତା' ଆଂଭେ ଆଂଭ ଆଖିରେ ଦେଖିଛୁ ।

2. ତାକୁ ଦେଖି କେଉଟୁଣୀ ବିନା ମୂଲ୍ୟରେ ମଧ୍ୟ ବିକୀ ହେବା ପାଇଁ ଉତ୍ସୁକ । ପାଦ ଆଗକୁ ଯାଉନାହିଁ । ଯଦି ହୁଏ ମୁଁ ନିଜେ ଯା'କୁ ବାହାହେବି ।

କିନ୍ତୁ ଦାମୋଦରଙ୍କ ଠାରୁ ଠିକ୍ ବିପରୀତ ବାରିସଶାହ ଏଇ କଥାକୁ ବିୟୋଗାନ୍ତକ କରିଛନ୍ତି । ସିଆ ମୁସଲମାନ ହୋଇଥିବାରୁ ସେ କରୁଣ ପରିଣତିକୁ ଗମ୍ଭୀର ଭାବରେ ହୃଦୟଙ୍ଗମ କରିଥିଲେ । ସେଇଥିପାଇଁ ବାରିସଶାହ ଏହି କଥାକୁ ବିୟୋଗାନ୍ତକ କରି କାହାଣୀଟିକୁ ପ୍ରଭାବଶାଳୀ କରିପାରିଛନ୍ତି ।

ଅନେକେ ହୀର୍‌ର କାହାଣୀକୁ କାଳ୍ପନିକ ବୋଲି ମନେ କରନ୍ତି । କିନ୍ତୁ ଏପର୍ଯ୍ୟନ୍ତ ଝଙ୍ଗରେ ହୀର୍‌ର କବର ରହିଛି ଓ ଆଜି ମଧ୍ୟ 'ମା ହୀର୍' କହି ସେହି କବରକୁ ସମ୍ମାନ ଦିଆଯାଏ । ଏଇ କବର ପ୍ରମାଣ ଦିଏ ଯେ, ଏଇ କାହାଣୀରେ ହୁଏତ ଅଳ୍ପ ବହୁତ ପରିବର୍ତ୍ତନ ହୋଇଛି; କିନ୍ତୁ ଏଇ ଘଟଣା ନିଶ୍ଚିତ ଭାବରେ ଘଟିଥିଲା । ଆଉ ମଧ୍ୟ ପଂଜାବୀ ମାନସ-ପଟରେ ଏଇ କାହାଣୀର ପ୍ରଭାବ ଏତେ ଗଭୀର ଯେ ରାନ୍‌ଝା ଓ ହୀର୍ କେବଳ ପାର୍ଥିବ ପ୍ରେମର ପ୍ରତୀକ ହୋଇ ରହିନାହାଁନ୍ତି; ବରଂ ସେମାନଙ୍କୁ ଆତ୍ମା ଓ ପରମାତ୍ମାର ପ୍ରତୀକ ରୂପେ ମଧ୍ୟ ଗ୍ରହଣ କରାଯାଉଛି ।

———

ଗୁରବକ୍ସ ସିଂହ

# ମିରଜା ସାହିବାଁ

ଝିଅଟି ଖୁସିରେ ଡେଇଁ ଡେଇଁ ଆସି କବାଟ ଆଗରେ ଛିଡ଼ା ହୋଇ ପାଟିକଲା । ଭିତରୁ ସମବୟସ୍କ ପିଲାଟିଏ ତରବର ହୋଇ ବାହାରିଲା । ମନାକରୁଥିବା ସତ୍ତ୍ୱେ ମଧ୍ୟ ଝିଅର ବସ୍ତାନିଟିକୁ ଛଡ଼ାଇନେଇ ପିଲାଟି ନିଜ ବସ୍ତାନି ସହିତ ଧରିଲା । ତା'ପରେ ଦୁହେଁ ବାହାରିଗଲେ ।

"ମିରଜା, ତୁ କାହିଁକି ମୋତେ ମୋର ବସ୍ତାନି ଧରିବାକୁ ଦେଉନୁ ?"

"ତୋ'ର ବସ୍ତାନି ଧରିଲେ ଯାଇ ମୋର ମସ୍‌ଜିଦ୍ ଯିବାକୁ ମନହୁଏ । ସେ ଯା'ହେଉ ପାଠପଢ଼ାରେ ମୋର ଆଦୌ ମନ ନାହିଁ ।" ପିଲାଟିର ଉତ୍ତରରେ ସରଳତାର ସ୍ୱର ଥିଲା ।

"ସେଇଥିପାଇଁ ତ ମୁଁ ତୋତେ ପଢ଼ିବା ପାଇଁ କହୁଛି । ମୋତେ ପାଠପଢ଼ାରୁ ଭାରି ଆନନ୍ଦ ମିଳେ । ଏବେ ମୁଁ ଗୋଟାଏ ବହୁତ ମଜାଦାର ବହି ପଢ଼ୁଛି ।" ଝିଅଟି ତା' କାନ୍ଧରେ ଝୁଲୁଥିବା ସାଥୀର ଅଂଟାରେ ନିଜର ହାତ ରଖିଲା ।

"ହଉ ସାହିବାଁ ! ତୁ ଯଦି କହୁଛୁ, ମୁଁ ଏଥର ଖୁବ୍ ପଢ଼ିବି । ହେଲେ ଯା' କହ, ମୌଲବୀ ଯାହା ପଢ଼ାଏ ମୋ ମୁଣ୍ଡରେ କିଛି ହେଲେ ପଶେ ନାହିଁ ।" ନିଜର ପଞ୍ଜରାହାଡ଼କୁ ସ୍ପର୍ଶ କରୁଥିବା ହାତର ଆଙ୍ଗୁଠିଗୁଡ଼ିକୁ ସେ ମନେ ମନେ ଗଣୁଥିଲା ।

ମୌଲବୀ ଆସି ଚଉତରା ଉପରେ ବସିଲା । ସେ ମିରଜାକୁ ଲକ୍ଷ୍ୟ କଲା । ଶ୍ରେଣୀର ଅନ୍ୟ ପିଲାମାନଙ୍କ ଭିତରେ ସାହିବାଁର ଡାହାଣ ପଟକୁ ମିରଜା ଅନ୍ୟମନସ୍କ ଭାବରେ ବସିଥିଲା ।

"ସାହିବା, ତୋର ସାଥୀର ପଢ଼ିବାପାଇଁ ସ୍ପୃହା ନାହିଁ । ଦେଖୁନୁ ସେ କେମିତି ଚୁପ୍‌ଚାପ୍ ଗୁମ୍‌ମାରି ପଥର ପରି ବସିଛି । ପାଠପଢ଼ା ପ୍ରତି ତା'ର ରୁଚି ବଢ଼େଇବା ପାଇଁ ଚେଷ୍ଟା କର । ମସଜିଦ ବାହାରେ ତ ସେ ବେଶ୍ ଫୂର୍ତ୍ତିରେ ଥାଏ ।"

"ଆଜ୍ଞା, ମୁଁ ଆଜି ତାକୁ ବୁଝାଇଛି । କହୁଥିଲା ଆଜିଠୁ ପଢ଼ିବ ।"

"ଶୁଣ୍ ମିର୍‌ଜିୟା ! ଯଦି କାଲି ମଧ୍ୟ ତୋତେ ଏମିତି ପଥର ପରି ବସିରହିଥିବାର ଦେଖେ ତା'ହେଲେ ମୁଁ ତୋ' ବାପାଙ୍କ ପାଖକୁ ଖବର ଦେବି ଯେ ସେ ଆସି ତୋତେ

ଦାନାବାଦ ନେଇଯାଅନ୍ତୁ । ତୁ ଏଠିକୁ ଆସି ତୁଚ୍ଛାଟାରେ ତୋର ଓ ମୋର ଉଭୟଙ୍କର ସମସ୍ତ ନଷ୍ଟ କରୁଛୁ ।''

ସାହବାଁ ଅନୁନୟ କଲା, ''ମୌଲବୀଜୀ ! ଆପଣ ଆଉ ସପ୍ତାହେ ଦେଖିନଅନ୍ତୁ । ମୁଁ ବେବୋ ପିଉସୀର ଘରକୁ ଯାଇ ତାକୁ ପଢ଼େଇବି । ତା' ମନରେ ଏପର୍ଯ୍ୟନ୍ତ ପଢ଼ିବା ପାଇଁ ରୁଚି ଜନ୍ମି ନାହିଁ । ହେଲେ କ'ଣ ହେଲା ମୁଁ ଜାଣେ ସେ ବୁଦ୍ଧିମାନ୍ ପିଲା ।''

ମସ୍‌ଜିଦରୁ ଛୁଟି ହେବା ସାଂଗେ ସାଂଗେ ସାହବାଁ ମିରଜା ସାଥିରେ ବେବୋ ପିଉସୀ ଘରକୁ ଗଲା ଓ ମୌଲବୀ ଯାହା କହିଥିଲେ ତାକୁ ଶୁଣେଇଦେଲା । ବେବୋ ଆଗରୁ ମଧ୍ୟ ଅନେକଥର ମିରଜାକୁ ପଢ଼ାଶୁଣା କରିବା ପାଇଁ କହିସାରିଥିଲା; କିନ୍ତୁ ଆଜି ତା'ର କଥା ଶୁଣି ପିଲାଟିର ମନରେ ଗଭୀର ପ୍ରଭାବ ପଡ଼ିଲା ।

''ଦେଖ୍ ବାପ ! ମୌଲବୀ ଯଦି ଚୌଧୁରୀ ଭାଇଙ୍କୁ ଏ କଥା ଲେଖିଦିଏ, ତା'ହେଲେ ସେ କ'ଣ ଭାବିବେ । ସେ ଭାବିବେ ଯେ ତୋ ପ୍ରତି ମୋର ଟିକେ ହେଲେ ଧ୍ୟାନ ନାହିଁ । ସେ ଦି'ଦିନ ଭିତରେ ଆସି ତୋତେ ନେଇଯିବ ଓ ମୁଁ ଜୀବନସାରା ଭାଇଭଉଣୀଙ୍କ ଆଗରେ ମୁହଁ ଦେଖାଇ ପାରିବିନି ।''

ବେବୋ ଘରେ ପିଲାପିଲି କିଛି ନ ହେବାରୁ ସେ ଭଉଣୀଠାରୁ ମିର୍‌ଜାକୁ ମାଗି ନେଇଥିଲା । ଆଉ ମଧ୍ୟ ସିଆଲ୍‌ର ମୌଲବୀକୁ ସମସ୍ତେ ଭଲ ବୋଲି ମାନୁଥିଲେ । ସାହବାଁ ହେଉଛି ମିରଜାର ମାମୁଁଝିଅ ।

''ତା ଛଡ଼ା ମାଉସୀ, ମୋର ପାଠପଢ଼ାରେ ମଧ୍ୟ ଡୋରି ବନ୍ଧା ହେବ ।'' ସାହବାଁ କହିଲା, ''ମା'ତ ଆଗରୁ କହୁଛି ଯେ ମୁଁ ବଡ଼ ହୋଇଗଲିଣି, ମୋର ଆଉ ମସ୍‌ଜିଦ ଯିବା ଉଚିତ ନୁହେଁ । ହେଲେ ମୁଁ ତାକୁ କହିଦିଏ ଯେ, କ'ଣ ହେଲା; ମିରଜା ମୋ ସାଂଗରେ, ଥାଏ । ଏକଥା ଶୁଣିଲା ପରେ ଯାଇ ସେ ରାଜି ହୁଏ । ପରେ ସେ ଆଉ ଏକଥା ବି ମାନିବନି ।'' ମିରଜା ଚିଂତିତ ହୋଇଉଠିଲା ।

''କହ ବାପ !'' ମାଉସୀ ଆର୍ଦ୍ର ସ୍ୱରରେ କହିଲା, ''ତୁ ଏଠି ଅଛୁ ବୋଲି ସିନା ମୋର ଶୂନଶାନ୍ ଘରେ ଟିକିଏ ହେଲେ ଚହଲ ଅଛି । ମୋ ପାଇଁ ଅଂତତଃ ମନକୁ ମାରି ପାଠ ପଢ଼ । ଭଉଣୀ ପାଖରେ ମୋ କଥାର ମାନ ରହିଯାଉ ।''

ଶରଧାରେ ଦେଇଥିବା ଗାଳିର ପ୍ରଭାବରେ ମିରଜା ମାସକ ଭିତରେ ବର୍ଷଯାକର ପରିଶ୍ରମ ପୂରା କରିଦେଲା । ମୌଲବୀ ସନ୍ତୁଷ୍ଟ ହୋଇ ପଢ଼ାଇଲାବେଳେ ଅନେକ ଥର ତା' ପିଠିକୁ ଆଉଁସିଥିଲେ ।

ତାକୁ ସ୍ୱା' ପୂର୍ବରୁ ଦିନଯାକ ଭିତରେ ମାତ୍ର ଗୋଟାଏ କଥା ଭଲଲାଗୁଥିଲା । ତା' ଥିଲା ସାହବାଁ ସାଂଗରେ ମସ୍‌ଜିଦ୍ ଯିବା ଓ ମସ୍‌ଜିଦରୁ ଫେରିବା । ଏବେ ନାନାପ୍ରକାରର ସୁଖଦ ଅନୁଭୂତିରେ ତା'ର ସାରାଦିନ ଭରିଉଠିଲା—ମାଉସୀ ଖୁସି ଥିଲା, ମୌଲବୀ ମଧ୍ୟ । ଆଉ ସାହବାଁ···ସେ ପ୍ରତିଦିନ ମିର୍‌ଜା ଘରକୁ ଆସୁଥିଲା । ସେ ଦିନସାରା ସ୍କୁଲରେ

ଦିଆଯାଇଥିବା ପାଠ ମନେ ରଖୁଥାଏ ଓ ପଢ଼ିଲାବେଳେ ତା'ର ମନେହୁଏ ସତେ ଯେମିତି ସାହେବାଁ ତା' କଡ଼କୁ ଲାଗି ବସିଛି ।

ସେ ଯା' ପୂର୍ବରୁ ସ୍ୱପ୍ନରେ ଦେଖୁଥିଲା ଯେ ସେ ସାହେବାଁର ବସ୍ତାନି ଉଠାଇ ଚାଲିଛି ଓ ନିଜ ଅଂଟାର ଚାରିପଟେ ଗୁଡ଼େଇ ହୋଇଥିବା ହାତର ଆଂଗୁଠିଗୁଡ଼ିକ ଗଣୁଛି । ମସ୍‌ଜିଦ ଦୂର ଅଛି, ସେମାନେ ଚାଲିଛନ୍ତି । ତା' ହୃଦୟ ଏକ ନୂତନ ଉନ୍ମାଦନାରେ ପୂରିଉଠୁଥିଲା ଓ ସେ ଏତେ ଉନ୍ମାଦନା ସହି ନପାରି ନିଦରୁ ଉଠିଯାଉଥିଲା ।

ଏବେ ତାକୁ ଅନ୍ୟ ପ୍ରକାରର ସ୍ୱପ୍ନ ଦେଖାଯାଉଥିଲା···ସାହେବାଁ ତାକୁ ପଢ଼ାଉଛି, ଗୋଟାଏ ପରେ ଗୋଟାଏ ବହି ସରିଯାଉଛି···ଶେଷ ବହିଟିକୁ ସାହେବାଁ ଦପ୍‌ଦପ୍ ଆଖିରେ ତା' ଆଡ଼କୁ ଅନାଉଛି ଓ ମିରଜାର ହାତ ଧରି କହୁଛି—"ମୁଁ ତୋତେ ଆଉ କ'ଣ ପଢ଼େଇବି ? ତୁ ତ ମୋତେ ପୂରାପୂରି ପଢ଼ି ସାରିଲୁଣି ।" ସାହେବାଁର ଆଂଗୁଠିଗୁଡ଼ିକର ସ୍ପର୍ଶ ତା' ମନ ଭିତରେ ଅଜସ୍ର ପ୍ରଶ୍ନ ସୃଷ୍ଟି କରୁଥିଲା—ତା'ର ନିଦ ଭାଂଗିଯାଉଥିଲା । କିଂତୁ ଜାଗ୍ରତ ଅବସ୍ଥାକୁ ସ୍ୱପ୍ନଠାରୁ ଫିକା ଥିବାର ଦେଖି ସେ ପୁଣି ଆଖି ବୁଜି ଦେଉଥିଲା । "କ'ଣ କରେ ମିରଜା ! ପଢ଼ିପଢ଼ି ତୋର କ'ଣ ଏଯାଏଁ ପେଟ ପୂରିଲାନି ଯେ ପୁଣି ଆସିଛୁ ?" ସାହେବାଁର ହସହସ ମୁହଁ ତା' ସାମ୍ନାରେ ଭାସିଉଠୁଥିଲା ଓ ସେ କହୁଥିଲା, "ମୁଁ ପଢ଼ିବା ପାଇଁ ଆସିନି । ତୋତେ ପାଖରେ ବସେଇ କିଛି ସମୟ ଉଡ଼ିବା ପାଇଁ ଇଚ୍ଛା ହେଉଛି । ଦେଖ୍, ଘୋଡ଼ା ନେଇ ଆସିଛି । ମୋ ପଛରେ ବସି ଯା ।" ତା'ପରେ ସେମାନେ ପୃଥିବୀରେ ନୁହେଁ, ଆକାଶରେ ଉଡ଼ିବୁଲୁଥିଲେ ।

ସେଇ ବର୍ଷଟି ମିର୍‌ଜା ଓ ସାହେବାଁର ଜୀବନରେ ସବୁଠାରୁ ମଧୁର ସମୟ ଥିଲା । ଦିନଯାକର ଇଚ୍ଛା ଓ ଆକାଂକ୍ଷାମାନ ରାତିରେ ତାରା ପାଲଟିଯାଇ ସ୍ୱପ୍ନରେ ମିଟିମିଟି ହୋଇ ଜଳୁଥିଲେ । ଜଳ ସ୍ଥଳ ଆକାଶ ରଂଗିନ ହୋଇଉଠୁଥିଲା । ଦୁଇଟି ଶିଶୁ-ହୃଦୟ ଜଣକର ହାତ ଅପରର କାଂଧରେ ଓ ଅପରର ହାତ ତା' ସାଥୀର ଅଂଟାରେ ଥିଲା—ଏଇ ଦୁଇଟି ଅନାବିଳ ଆତ୍ମା ଧରାଧରି ହୋଇ ଯୌବନର ରଂଗିନ ଉଦ୍ୟାନ ଭିତରକୁ ପାଦ ବଢ଼ାଉଥିଲେ ।

ମିରଜାର ବାପା ଖବର ପାଇଲା ଯେ ତା'ର ପୁଅ ପାଠପଢ଼ାରେ ବେଶ୍ ଆଗେଇଛି । ଦିନେ ସେ ପୁଅକୁ ଦେଖିବା ପାଇଁ ଆସିଲା । ପୁଅର ହୃଷ୍ଟପୁଷ୍ଟ ଓ ବଳିଷ୍ଠ ଅଂଗସୌଷ୍ଠବକୁ ଦେଖି ତା' ମନ ଭିତରେ ଏକ ଇଚ୍ଛା ଜାଗ୍ରତ ହେଲା : "ଯା'କୁ ସୈନିକର ସମସ୍ତ ଗୁଣରେ ନିପୁଣ କରିବ ।" ସେ ଭାବିଲା, "ଶରଚାଳନା ଓ ଘୋଡ଼ାଚଢ଼ାରେ କେହି ହେଲେ ତା'ର ସମକକ୍ଷ ହେବେନାହିଁ । ଶତ୍ରୁମାନେ ତାକୁ ଛୁଇଁ ମଧ୍ୟ ପାରିବେନି ।"

ସେ ନିଜର ଶାଳୀ ବିବୋ ସହିତ କଥାଭାଷା ହେଲା । ବିବୋ ପରାମର୍ଶ ଦେଲା ଯେ ମିରଜାକୁ ଆଉ ବର୍ଷେ ପଢ଼ାଇବା ଉଚିତ ।

"ନା' ବିବୋ !" ବାଂଜାଲ୍ ଖରାଲ ମୁଂଡ ହଲେଇ କହିଲା, "ସେ ବହୁତ ପଢ଼ିଲାଣି ।

ଯାହା ପାଖରେ ବେଶି ଜମିବାଡ଼ି ଥାଏ ତା'ର ଅନେକ ଶତ୍ରୁ । ମୋତେ ଲାଗୁଛି ଏଇ ପିଲାଟି ଦେହରେ ନାହିଁ ନଥିବା ଯୌବନ ଝୁଂପଦେଉଛି । ସ୍ୱା'କୁ ମୁଁ ଖଂଡାଖେଳ, ଧନୁର୍ବିଦ୍ୟା ଓ ଘୋଡ଼ାଚଢ଼ାର ଶିକ୍ଷା ଦେଇ ସବୁଠାରୁ ଦକ୍ଷ ଓ ପାରଂଗମ କରେଇବ ।''

ମିରଜାର ଦାନାବାଦ ଯିବା କଥା ନିଶ୍ଚିତ ହେଲା; କିଂତୁ ସାହିବାଁ ତା'ର ବାଂଜଲ ପିଉସାକୁ ରାଜି କରେଇନେଲା ଯେ ଯିବା ଆଗରୁ ସେ ମିରଜାକୁ ଦୁଇଦିନ ପାଇଁ ତା'ର ଘରକୁ ନେଇଯିବ ।

ଦ'ଦିନଯାକ ସେମାନେ ମୁହୂର୍ତ୍ତିକ ପାଇଁ ମଧ୍ୟ ଅଲଗା ହେଲେ ନାହିଁ । ଦୁହେଁ ମିଶି ଏକସାଂଗରେ ଖିଆପିଆ କଲେ ।

''ସାହିବାଁ, ତୋ ବହିରୁ ତୋତେ ଯେଉଁସବୁ କାହାଣୀ ତୋତେ ଭଲଲାଗେ ସେସବୁ ମୋତେ କହ ।'' ମିର୍ଜା ଅନୁରୋଧ କଲା । ସାହିବାଁ ବହି କାଢ଼ିଲା । ବହିଟିର ପୃଷ୍ଠା ମେଲାଇ ସେ ଗୋଟାଏ ଗପ ଶୁଣେଇଲା । ତା' ଥିଲା ଏକ ଅଲ୍ଲଅଲ ରାଜକନ୍ୟାର କାହାଣୀ ।

''ତୁ କାହାଣୀଟି ଏଭଳିଭାବରେ ପଢ଼ିଲୁ, ସତେ ଯେମିତି ତାହା ତୋ ନିଜର କାହାଣୀ ।'' ପଥରର ମୂର୍ତ୍ତି ପରି ବସି ଶୁଣୁଥିବା ମିର୍ଜା କାହାଣୀଟି ଶେଷ ହେବା ପରେ ଚମକି ପଡ଼ିଲା ।

''ମିର୍ଜା, ତୁ ବି ଖିଆ ଗୋଟାଏ ସେମିତି ।'' ସାହିବାଁ ନିଜର ଚିବୁକରେ ଆଙ୍ଗୁଠି ରଖି ଏଭଳି ମୁଦ୍ରାରେ କହିଲା ଯେ, ମନେହେଲା ସତେ ଯେମିତି ତାହା ଶୈଶବ ଅତିକ୍ରମ କରି ସହସା କଣୋଷ ପାଲଟିଯାଇ ପ୍ରେମରେ ନିମଗ୍ନ ହୋଇପଡ଼ିଥିବା ଏକ ଯୁବତୀର ଭଂଗୀ ।

''ସାହିବାଁ ! ଆଉ ଗୋଟାଏ ଗପ କହ ।'' ସାହିବାଁର ଗଳ୍ପ କହିବାର ଯୋଗ୍ୟତା ପ୍ରତି ମନେ ମନେ ଈର୍ଷାନ୍ୱିତ ହୋଇ ମିର୍ଜା ତାକୁ ମିନତି କଲା । ଗୋଟାକ ପରେ ଗୋଟାଏ କରି ସାହିବାଁ ପୂରାପୂରି ଚଉଦଟି ଗପ ଶୁଣାଇଲା । କାହାଣୀ ଶୁଣାଉ ଶୁଣାଉ ମନରେ କ'ଣ ଖିଆଲ ଆସିଲା କେଜାଣି, ସେ ବହିଟିକୁ ବଂଦ କରିଦେଲା ଓ ମିର୍ଜା କାଂଧରେ ହାତ ରଖି ପଚାରିଲା, ''ଆରେ ମିର୍ଜା ! ସତ କହ, ତୁ କ'ଣ କେବେ ସାହିବାଁକୁ ମନେପକାଇବୁ ?''

ରୁଦ୍ଧ କୋଠରିର ଝରକାମାନଂକୁ ଅକସ୍ମାତ୍ ଧଡ଼କିନା ଖୋଲିଦେଲେ ଯେମିତି ଆଲୋକର ବନ୍ୟା ଆଖିକୁ ଝଲସାଇଦିଏ, ସେଇମିତି ଭିତରେ ଭିତରେ ଥରଉଠୁଥିବା ପିଲାଟିର ଓଠରୁ ହଠାତ୍ କିଛି ହେଲେ ଶବ୍ଦ ବାହାରିଲା ନାହିଁ ।

''ତା'ହେଲେ କ'ଣ ମିର୍ଜା, ତୁ ମୋତେ ପୂରା ଭୁଲିଯିବୁ ?'' ମନେ ମନେ ସବୁ ଜାଣିଥିଲେ ହେଁ ସାହିବାଁ ନ ଜାଣିଲା ପରି ଅଭିନୟ କଲା ।

"ସାହିବାଁ ! ମୁଁ କ'ଣ ତୋ'ର କୌଣସି କଥାକୁ ଭୁଲିଯାଇ ପାରିବି ?" ଶେଷରେ ତା'ର ମୁହଁ ଫିଟିଲା ।

ସାହିବାଁ ତା'ର ଓଠ ଦୁଇଟିକୁ ଦେଖିଲା—ଅଳ୍ପ ଅଳ୍ପ ପ୍ରକଂପନ ସେ ଏବେ ମଧ୍ୟ ବାରିପାରୁଥିଲା । ଓଠ ଉପରକୁ ସେ ଆଖିମାନଂକୁ ଅନେଇଲା; ସେଠି ଲୁହର ଏକ କ୍ଷୀଣଧାର ଦେଖାଗଲା । କାଳେ ଲୁହ ବାହାରିପଡ଼ିବ ସେଇଥିପାଇଁ କଥାରେ ବ୍ୟସ୍ତ ରଖିବା ପାଇଁ ସାହିବାଁ ତାକୁ ପଚାରିଲା, "ଆଚ୍ଛା କହ, ମୋର କେଉଁ କଥା ତୋ'ର ସବୁଠୁ ବେଶି ମନେ ରହିବ ?" ସେ ନିଜର ଦୁଇ ହାତରେ ମିର୍‌ଜାର ପାପୁଲିକୁ ଆଉଁସିବାକୁ ଲାଗିଲା ।

"ମୋ ଅଂଟାକୁ ବେଢ଼ି ଧରିଥିବା ତୋ'ର ହାତ···ନା, ନା, ତୁ ଯେଉଁ ମୋତେ ପଢ଼େଇବାପାଇଁ ଆସୁଥିଲୁ—ନା' ତା' ବି ନୁହେଁ···ସବୁଠୁ ବେଶି ଭଲଲାଗୁଥିଲା ତୁ ଯେତେବେଳେ ମୋତେ ପଚାରୁଥିଲୁ ରାତିରେ ମୁଁ କ'ଣ ସ୍ୱପ୍ନ ଦେଖିଥିଲି, ତାହା ଶୁଣି ତୋ ମୁହଁରେ ଯେଉଁ ପ୍ରତିକ୍ରିୟା ହେଉଥିଲା ତା' ଚିରଦିନପାଇଁ ମୋ ଆଖିଆଗରେ ରହିବ···ନା ସାହିବାଁ ! ନା, ସତ କହିବି —ପ୍ରକୃତରେ ମୁଁ ଜାଣିନି, ତୋର କେଉଁ କେଉଁ କଥାକୁ ମୁଁ ମନେରଖିବି—କିଂତୁ ଏତିକ ଜାଣେ, ମୁଁ ତୋତେ କେବେହେଲେ ଭୁଲି ପାରିବି ନାହିଁ ।"

ତା' ପରଦିନ ସକାଳେ ଜଳଖିଆ ଖାଇସାରି ବଂଜଲ ଖରଲ ଯିବାପାଇଁ ସଜହେଲା । ମିର୍‌ଜା ମାଉସୀକୁ ଆଲିଙ୍ଗନ କଲାପରେ ନିଜ ପକେଟରୁ ଛୁରିଟିଏ କାଢ଼ି ସାହିବାଁକୁ ନିଜର ସ୍ମୃତିଚିହ୍ନରୂପେ ଦେଲାବେଳକୁ ତା'ର ବାପା ଶୀଘ୍ର ବାହାରିବା ପାଇଁ ପାଟିକଲା । ଅନିଚ୍ଛା ସତ୍ତ୍ୱେ ସେ ପାଦ ବଢ଼େଇଲା । ସେ ବାଂରବାର ବୁଲିପଡ଼ି ସାହିବାଁ ଆଡ଼କୁ ଅନାଉଥାଏ । ଶେଷରେ ମିର୍‌ଜା ବାପ ପଛରେ ଘୋଡ଼ା ଉପରେ ବସିଲା ।

ଦାନାବାଦରେ ପହଂଚିବାକ୍ଷଣି ବଂଜଲ ଖରଲ ଘୋଡ଼ାଚଢ଼ା, ଖଂଡାଖେଳ ଓ ଧନୁର୍ବିଦ୍ୟାରେ ଅଭିଜ୍ଞ ଜଣେ ଓସ୍ତାଦର ତତ୍ତ୍ୱାବଧାନରେ ମିର୍‌ଜାକୁ ଛାଡ଼ିଦେଲା ।

ମିର୍‌ଜା ପାଇଁ ତାର ବାପାର ଘୋଡ଼ାଶାଳରୁ ଏକ ଘୋଡ଼ା ବଛାଗଲା । ଉଡ଼ିବା ଥିଲା ସେଇ ଘୋଡ଼ାର ସ୍ୱଭାବ । ଖୁବ୍ କ୍ୱଚିତ୍ ଲୋକ ସେ ଘୋଡ଼ାକୁ ମଣ କରିପାରୁଥିଲେ; କିଂତୁ ପ୍ରଥମ ଦେଖାରେ ହିଁ ଘୋଡ଼ାଟି ମିର୍‌ଜାକୁ ସ୍ୱୀକାର କରିନେଲା ।

ସମୟ ବିତିବାକୁ ଲାଗିଲା । ଯେଉଁ ଘୋଡ଼ା ଉପରେ ସେ ସ୍ୱପ୍ନରେ ଚଢ଼ୁଥିଲା, ଏବେ ସେଇ ଘୋଡ଼ା ମିର୍‌ଜାକୁ ବାସ୍ତବରେ ମିଳିଯାଇଥିଲା । ସେ ଭାବୁଥାଏ, କେଜାଣି କେବେ ଯାଇ ତା'ର ସ୍ୱପ୍ନର ରାଣୀ ଏଇ ଘୋଡ଼ାରେ ଚଢ଼ିବ । ତାର ରାଣୀ ମିର୍‌ଜାକୁ 'ଅଲଫ ଲୈଲ' ବହିଟିକୁ ମନେପକେଇବା ପାଇଁ ସ୍ମୃତିଚିହ୍ନ ରୂପେ ଉପହାର ଦେଇଥିଲା । ବହିଟିରୁ ସେ ସାହିବାଁ ପାଖରୁ ଶୁଣିଥିବା କାହାଣୀମାନ ପଢ଼େ ଓ ରାତିରେ ସେ ନିଜେ ସେଇ କାହାଣୀର ରାଜକୁମାର ପାଲଟିଯାଏ । ଘୋଡ଼ାରେ ବସି ସେ ସାହିବାଁର ସନ୍ଧାନରେ ଉଡ଼ିବୁଲୁଥିଲା···

ଅନେକଥର ସିୟାଲ୍ ଆଡ଼କୁ ଯିବାପାଇଁ ସେ ମନ ବଳାଏ· ·ସେ ଖବର ପାଉଥାଏ ଯେ

ସିଆଲ୍‌ରେ ବସନ୍ତ ରୂପର ସମ୍ଭାର ନେଇ ପଦାର୍ପଣ କରୁଛି ।

ସାହିବା ଯୌବନରେ ପାଦଦେଲା । ତା'ର ଜୀବନର ସମୁଦ୍ର ତରଙ୍ଗମୟ ହୋଇଉଠିଲା । ସେ ପ୍ରତିଦିନ ବଡ଼ୋ ପିଉସୀ ଘରକୁ ଯାଉଥିଲା । ପିଉସୀ ଅନେକଥର ଦାନାବାଦ ଯାଇ ମିର୍‌ଜାକୁ ଭେଟି ଆସିଥାଏ । ...''ବେଶ୍ ସୁନ୍ଦର ଦିଶୁଛି ।'' ପିଉସୀ ମୁହଁରୁ ଏକଥା ଶୁଣି ସାହିବାଁ ଯେମିତି ନିଶାରେ ଘାରି ହୋଇ ଯାଉଥିଲା : ''ପିଉସୀ, ତୁ ତାକୁ କ'ଣ କିଛି ସମୟ ପାଇଁ ସିଆଲକୁ ଆସିବା ପାଇଁ କେବେହେଲେ କହିନୁ ?''

''ସେ ତ ଆସିବା ପାଇଁ ସବୁବେଳେ ଝୁରିହେଉଛି—ହେଲେ ଖାଁ ଭାଇ ମୁଣ୍ଡକୁ ଭୂତ ଚଢ଼ିଛି ଯେ ଘୋଡ଼ାଚଢ଼ା, ଶରଚାଳନା ଓ ଖଣ୍ଡାଖେଳରେ ମିର୍‌ଜା ପୃଥିବୀରେ ଅଦ୍ୱିତୀୟ ହେଉ, ତା'ର ଓସ୍ତାଦ୍ ସବୁବେଳେ ତା' ପାଖରେ ଜୁଗିଭଳି ଲାଗି ରହିଥାନ୍ତି ।

''ପିଉସୀ, ତା'ର କଣ ମନେଅଛି ଯେ ମୁଁ ବି ଦିନେ ତା'ର ଓସ୍ତାଦ୍ ଥିଲି ?'' ସାହିବାଁ ପଚାରେ ।

''ମନେଥିବା କଥା ପଚାରୁଛୁ ? ତୁ ତାକୁ ଯେଉଁ ବହିଟି ଦେଇଥିଲୁ ସେ ତାକୁ ନେଇ ମୋ ପାଖକୁ ଆସିଲା—କହୁଥିଲା, ''ଘଡ଼ିଏ ବି ବେଳ ପାଇଲେ ମୁଁ ନିଶ୍ଚୟ ଗୋଟାଏ ଅଧେ ଗପ ପ୍ରତିଦିନ ପଢ଼େ । ମାଉସୀ, ତୁ ଏକଥା ସାହିବାଁକୁ କହିଦେବୁ ।''

ଅନେକ ରାତିଯାଏ ସାହିବାଁ ଶୋଇ ପାରୁ ନଥିଲା । ସେ ମନେ ମନେ ଭାବୁଥିଲା ଯେ ମିର୍‌ଜା ଏବେ କେମିତି ଦିଶୁଥିବ, ସେ ଆସିଲେ କ'ଣ ଏବେ ବି ତା' ଅଣ୍ଟାରେ ହାତଦେଇ ଚାଲିପାରିବ ? ଏବେ ଯଦି ମିର୍‌ଜା ତା' କାନ୍ଧରେ ହାତ ରଖିଦିଏ, ତା'ହେଲେ ତାକୁ କେମିତି ଲାଗିବ । ଏକଥା ଚିନ୍ତା କରି ତା'ର ସାରା ଶରୀର କମ୍ପିଉଠେ । ତା'ପରେ ତା'ର ଆଖି ଲାଗିଯାଏ । ମିର୍‌ଜା ଆସେ ଓ ତାକୁ ଘୋଡ଼ାରେ ବସେଇ ମେଘ ଉପରକୁ ଉଡ଼ିଯାଏ ।

ସାହିବାଁର ବାହାଘର ବିଷୟ ଚର୍ଚ୍ଚା ହେବାକୁ ଲାଗିଲା । ଅନେକେ ମିର୍‌ଜା କଥା ମନେ ପକାଇଲେ, ଏପରିକି ବଡ଼ୋ ମଧ୍ୟ ତା' ମାଆ ପାଖରେ ଦିନେ ଶୁଣାଇଦେଲା ଯେ ମିର୍‌ଜା ପରି ପାତ୍ର ଖୋଜିଲେ ବି ମିଳିବ ନାହିଁ । ମା'କୁ ବି ଏକଥା ପସନ୍ଦ ଲାଗିଲା । ସେ ସାହିବାଁର ଅଜା ଖୀବା ଖାଁର ମତାମତ ଜାଣିବାକୁ ଚାହିଁଲା । ହେଲେ ଖୀବା ଖାଁ ଖୁବ୍ ଦୂରଦୃଷ୍ଟି ସମ୍ପନ୍ନ ବ୍ୟକ୍ତି ଥିଲା : ''ଆରେ ମଲବୀ, ଆମର ତ ଝିଅ ବୋଲି ମାତ୍ର ଗୋଟାଏ । ତା'ରି ମାଧ୍ୟମରେ ଆମେ କାହିଁକି କୌଣସି ଏକ ବଡ଼ ଘର ସହିତ ସମ୍ବନ୍ଧ ବାନ୍ଧି ତାଙ୍କୁ ନିଜର କରିବାନି ? ବଂଜଲ ଘର ତ ଆଗରୁଇ ଆମର ଆପଣାର ଲୋକ । ଚନ୍ଧଡ଼ ପରିବାର ସହିତ ଆମର ଆଗରୁ କିଛି ସମ୍ପର୍କ ନାହିଁ । ସେମାନେ ମଧ୍ୟ ଟିକିଏ ଦୂରେଇ ରହନ୍ତି । ତା'ର ପୁଅ ତାହିର ଏବେ ଯୁବକ । ଯଦି ତାଙ୍କ ଘରେ ସମ୍ବନ୍ଧ ପ୍ରତିଷ୍ଠା କରାଯାଏ ନା, ବୁଝିଲୁ, ସାରା ଅଞ୍ଚଳଟାଯାକ ଆମ ନିଜର ହୋଇଯିବ ।''

ଅଜାର ଏଇଭଳି ପ୍ରସ୍ତାବ ଶୁଣି ସାହିବାଁ ଅନେକ କାନ୍ଦିଲା । ସେ ବଡ଼ୋ ପିଉସୀ

ଘରକୁ ଯାଇ କାଂଦି କାଂଦି କହିଲା, "ପିଉସୀ, ତୁ ଯାଇ ମିର୍‌ଜାକୁ କହିଦେ ଯେ ସେ ତାର ବାପାମାଆଙ୍କୁ ବାଧ କରୁ । ଏଠି ତୁ ଓ ପିଉସା ଦି'ଜଣଯାକ ଅଛ । ସମସ୍ତେ କହିଲି ପରେ କି'ଣ ଅଜା ମାନିବେନି ?"

ବିବୋ ଦାନାବାଦ ଯାଇ ଭଉଣୀ ଓ ଭିଣୋଇଂକ ସହିତ ବିସ୍ତର ବିନିମୟ କଲି; କିଂତୁ ତା'ର ଭଉଣୀ ନିଜର ବାପାର ସ୍ୱଭାବ ସହିତ ସୁପରିଚିତ ଥିଲି ଓ ଭିଣୋଇ ଥିଲି ସ୍ୱାଭିମାନୀ । "ହଉ, ଶୀବା ଚିଂଧଡ଼ି ପରିବାରରି ସୁଆଦ ବି ଚାଖିନେଉ—ବିବୋ, ମୁଁ କେବେହେଲେ ତା' ପାଖକୁ ଯିବିନି ।" ବିଂଜଲି ସ୍ପଷ୍ଟ ମନାକରିଦେଲି ।

ଶେଷରେ ବିବୋ ମିର୍‌ଜାକୁ ବୁଝେଇଲା ଯେ ସେ ନିଜେ ଯାଇ କହୁ ସାହିବାଁ ଉପରେ ତା'ର ସବା ପ୍ରଥମ ଅଧିକାର ରହିଛି : "ଆରେ ବାବୁ, ଆଉ ମୋଟେ ବିଳଂବ କରନା । ଭିଂଡାଣି ଚିଂଧଡ଼ି ଘରକୁ ଯିବା ଉପରେ । ଏଆଡ଼େ ସାହିବାଁ ଖିଆପିଆ ସବୁ ଭୁଲି-ଗଲାଣି ।"

ମିର୍‌ଜା ନିଜର ଧନୁ-ଶର, ଘୋଡ଼ା ସବୁକଥା ଭୁଲିଗଲା । ମାଉସୀ ପଛେ ପଛେ ସେ ମଧ୍ୟ ଯାଇ ସିୟାଲ୍‌ରେ ପହଂଚିଗଲା ।

ସାହିବାଁର ଅବସ୍ଥା ଅତ୍ୟଂତ ବିଚିତ୍ର ଧରଣର ହୋଇପଡ଼ିଥିଲା । ସେ ଏଇ ମିଳନ ପାଇଁ ମନଭିତରେ ନାନାପ୍ରକାରର କଳ୍ପନା କରିସାରିଥାଏ । କିଂତୁ ଏବେ ମିର୍‌ଜାକୁ ଆଖି ଆଗରେ ପାଇ ନା ତା'ର ହାତଉପରକୁ ଉଠିଲା, ନା ତାର ଓଠ ଖୋଲିଲା । ହଠାତ୍ ଯେମିତି ତା'ର ସବୁଯାକ ସ୍ୱପ୍ନ ଆଖିଭିତରୁ ବାହାରିଯାଇ ତା' ସାମ୍ନାରେ ଛିଡ଼ା ହୋଇ ପଡ଼ିଥିଲେ ।

ମିର୍‌ଜା ତା' ଆଡ଼କୁ ଚାହିଁଲା । ସାହିବାଁର କାଂଧ ଉପରେ ହାତ ରଖିବାକୁ ମନ ଖୁଜୁବୁଜୁ ହେଲା; କିଂତୁ ସେ କାଂଧଗୁଡ଼ିକ ଆଗଠାରୁ ଭିନ୍ନ ଥିଲେ । ତା'ର ହାତମାନ ମଧ୍ୟ ସେଇ ହାତ ହୋଇ ରହି ନ ଥିଲେ ଯା'କୁ ସେ ପ୍ରତିଦିନ ମିର୍‌ଜାର ଅଣ୍ଟା ଚାରିପଟେ ଗୁଡ଼ାଇ ଧରୁଥିଲା ।

"ସାହିବାଁ !"—ତା' ମୁହଁରୁ ଏତିକି ମାତ୍ର ଶବ୍ଦ ବାହାରିଲା ।

"ମିର୍‌ଜା !"—ଉତ୍ତରରେ ଏତିକି ମାତ୍ର ସେ କହିପାରିଲା ।

ସୁଯୋଗ ଉଂଭି ମନ ଭିତରେ ସାହସ ବାଂଧି ମିର୍‌ଜା ଅଜା ସହିତ କଥାହେଲା, "ଯା' ହେଲେ ବି ମୁଁ ଆପଣଂକର ନାତି । ମୋତେ ଆପଣ ପୁଅ କରିନାଅଂତୁ । ମୁଁ ସାହିବାଁ ସହିତ ଖେଳିଛି—ତା' ସାଂଗରେ ପଢ଼ିଛି । ତା'ର ଅନ୍ୟ ଘରକୁ ଯିବା ଅର୍ଥ ମୋର ଅଧିକାରକୁ ଜୋର୍‌କରି ମୋ ପାଖରୁ ଛଡ଼ାଇ ନିଆହେଉଛି ।"

"ବାପ ମିର୍‌ଜା, ମୁଁ ତୋତେ ଖୁବ୍ ଭଲପାଏ । ଯଦି ସାହିବାଁର ଆଉ ଜଣେ ଭଉଣୀ ଥାଆଂତା ତା'ହେଲେ ମୁଁ କେବେହେଲେ ତୋ କଥାକୁ ଏଡ଼େଇ ଦିଅଂତିନି । ଏବେ ଚିଂଧଡ଼ି ପରିବାର ସହିତ ସଂପର୍କ ସ୍ଥାପନା କରି ମୁଁ ନିଶ୍ଚିଂତ ହୋଇଯିବା ପାଇଁ ଚାହୁଁଛି ।

ତା'ହେଲେ କାହାର ଆଉ ଆମ ଆଡ଼କୁ ଆଖି ଉଠେଇ ଦେଖିବା ପାଇଁ ସାହସ ହେବନ — ତୁମେମାନେ ତ ଆମ ନିଜ ଲୋକ ।"

ମିର୍ଜା ଜୋର୍ ଦେଇ କହିଲା, "ଏବେବି ଆପଣଂକ ଆଡ଼କୁ ଆଖି ଉଠେଇ ଦେଖିବା ଲୋକ ଜନ୍ମ ହୋଇ ନାହାଂନ୍ତି । ମୁଁ ମୋ ବାପାଂକର ଗୋଟାଏ ମାତ୍ର ପୁଅ ହେଲେ ବି କ'ଣ ହେଲା, ମୁଁ ଏକା ଏଗାର ଜଣଂକ ସାଙ୍ଗରେ ସମାନ ।"

"ତୋ ମନକୁ ଭାଂଗି ଦେଇଥିବାରୁ ମୁଁ ଦୁଃଖିତ; କିଂନ୍ତୁ ମୁଁ ତାଂକ ଘରକୁ ବାଇକ ପଠାଇସାରିଛି । କଥା ଦେଇସାରିଲା ପରେ ମୁଁ ମିଛୁଆ ହୋଇ ପାରିବିନି ।" ସ୍ୱାଭିମାନୀ ଅଜା କଥା ଛିଣ୍ଡେଇ ଦେଲା ।

ମିର୍ଜା ଉଠି ମାଉସୀ ଘରକୁ ଚାଲିଗଲା ଓ ମାଉସୀକୁ ତାଂକ ଘରେ ସାହିବାଁ ସହିତ ସାକ୍ଷାତର ବ୍ୟବସ୍ଥା କରିଦେବା ପାଇଁ ଅନୁରୋଧ କଲା ।

ଅନେକ ବର୍ଷ ପରେ ସେ ଆଜି ପୁଣି ଏଇ ଘରେ ସାହିବାଁର ପ୍ରତୀକ୍ଷାରେ ବସିଥିଲା । କିଂନ୍ତୁ ସେତେବେଳେ କେବଳ ତା'ର ଆଖିଯୋଡ଼ିକ ସାହିବାଁର ବାଟକୁ ଚାହିଁବସୁଥିଲେ । ସେ ବୁଝି ପାରୁନଥିଲା ଯେ ଆଜି ତା'ର ଭିତରେ କେତେ କ'ଣ ସାହିବାଁର ଆସିବାବାଟକୁ ଆତୁର ହୋଇ ଅନାଇ ବସିଥିଲା ।

"ସାହିବାଁ ଆସୁ···ସେତେବେଳେ ସେ ମୋ'ଠାରୁ ଡେଙ୍ଗା ଥିଲା । ଏବେ ସେ ମୋ କାଂଧ ପର୍ଯ୍ୟଂନ୍ତ ହେଉଛି । ଏବେ ସେ ମୋ ଛାତିରେ ପୂରାପୂରି ଲୁଚିଯିବ ।" ସାହିବାଁ ଆସିଗଲା । ଆଜି ତା' ପାଦରେ ପଇଝଣ୍ଟ ନଥିଲା; ତଥାପି ମିର୍ଜାର ମନେହେଉଥିଲା ସତେ ଯେମିତି ପୂର୍ବ ଅପେକ୍ଷା ବେଶି ଛମ୍ଛମ୍ ଶବ୍ଦ ହେଉଛି । ତାକୁ ଦେଖିବାକ୍ଷଣି ତା'ର ଇଚ୍ଛାଗୁଡ଼ିକ ତା' ମନ ଭିତରେ ହିଁ ଧକ୍ଧକ୍ ହେବାକୁ ଲାଗିଲା ।

ସେ ଯେତେବେଳେ ନିକଟକୁ ଆସିଲା ମିର୍ଜା ନିଜର ଓଠଗୁଡ଼ିକ ଖୋଲିପାରିଲାନି । ସାହିବାଁ ଆସି ଧୀରେ ଧୀରେ ମିର୍ଜାର ଅଂଟାକୁ ହାତରେ ଗୁଡ଼ାଇ ଧରିଲା ଓ ମିର୍ଜା ମଧ୍ୟ ଡରି ଡରି ସାହିବାଁର କାଂଧ ଉପରେ ହାତ ରଖିଲା । ଉଭୟଂକର ହାତ ପରସ୍ପରକୁ ଆଲିଂଗନ କରିବା ପାଇଁ ବ୍ୟାକୁଳ ଥିଲେ ମଧ୍ୟ ଲଜ୍ଜାଶୀଳ ମନ ତାଂକୁ ବାଧା ଦେଉଥିଲା ।

ସାହିବାଁର ଦୃଷ୍ଟି ଅଭିନବ ଥିଲା । ସେଇ ଦୃଷ୍ଟିରେ ପକ୍ଷୀଟିଏ ଡେଣା ଝାଡ଼ୁଥିଲା । ତା'ର ଆତ୍ମା-ପକ୍ଷୀ ଆଖିପତାରେ ଝୁଲିଯାଇ ଉଡ଼ିଯିବା ପାଇଁ ଏକ ହୃଦୟର ଡାଳ ସଂଧାନ କରୁଥିଲା । ପକ୍ଷୀଟିକୁ ମିର୍ଜାର ଆଖିରେ ଏଇ ଡାଳଟିର ପ୍ରତିବିଂବ ଦେଖାଗଲା । ଫୁର୍······ । ପକ୍ଷୀଟି ଡାଳରୁ ଡେଇଁପଡ଼ି ମିର୍ଜାର ବାହୁବଂଧନରେ ବାଂଧି ହୋଇ-ପଡ଼ିଲା ।

ଯେତେବେଳେ ହାତଗୁଡ଼ିକ ଟିକିଏ ଢ଼ିଲା ହେଲେ ସେତେବେଳକୁ ଆଉ ଆଖିରେ ଅଚିହ୍ନା ଭାବ ନଥିଲା । ଜଣକର ଆଖିରେ ଅପରର ରୂପ ପ୍ରତିଫଳିତ ହେଉଥିଲା । ଉଭୟେ ଉଭୟଂକର ହୃଦୟର ସ୍ପଂଦନ ସ୍ପଷ୍ଟ ଶୁଣିପାରୁଥିଲେ । ଏବେ ସବୁ କିଛି ସ୍ୱାଭାବିକ ହୋଇ

ପଡୁଥିଲା । ଆଉ କାହାରିକୁ କିଛି କହିବାପାଇଁ ଦ୍ୱିଧାବୋଧ ହେଉନଥିଲା ।

"ମିର୍‌ଜା, ତୁ ଏବେ କ'ଣ କରିବୁ ?" ସାହୁବାଁ ପଚାରିଲା ।

"ତୁ ଯେ ମୋର, ଏଇ କଥାସତିକକ ମୁଁ ଏଯାଏଁ ପରଖି ନଥିଲି । ଏବେ ଏମିତି କୌଣସି ମା'ର ପୁଅ ନାହିଁ; ଯିଏ ମୋ'ଠାରୁ ତୋତେ ଛଡ଼ାଇ ନେଇଯିବ ।"

"ହେଲେ ମୁଁ ଶୁଣିଛି ଯେ ଚଂଧଡ଼ ଘରେ ଅନେକ ପୁଅ···"

"ଏଇ ବାହୁରେ ଅନେକ ବଳ ଅଛି;" ମିର୍‌ଜା ସାହୁବାଁର କାଂଧରେ ହାତ ରଖିଲା ।

"କିନ୍ତୁ ମିର୍‌ଜା, ତୋତେ ଯେମିତି ମୋ ଭାଇମାନଙ୍କ ସହିତ ଲଢ଼େଇ କରିବା ପାଇଁ ନପଡ଼େ !" ସାହୁବାଁର ମୁହଁର ରଂଗ ଫିକା ପଡ଼ିଗଲା ।

"ନା ସାହୁବାଁ, ସେମାନେ ମୋର ମଧ୍ୟ ଭାଇ । ମୋର ଧନୁଶର ଓ ଘୋଡ଼ା ଥାଉ ଥାଉ କାହା ସହିତ ଯୁଦ୍ଧ କରିବା ପାଇଁ ପଡ଼ିବ ନାହିଁ । କାହାର ସାହସ ବି ହେବନି । କିନ୍ତୁ ତୁ ଯଦି ତୋ ବାପା ମାଆଙ୍କର ଦୁର୍ନାମ କଥା ଚିନ୍ତା କରି ବ୍ୟସ୍ତ ହେଉଛୁ, ତା'ହେଲେ ମୋତେ କହିଦେ ।" ମିର୍‌ଜା ହାତ ଘୁଞ୍ଚାଇ ଆଣିଲା ।

"ଦୁର୍ନାମକୁ ତ ସେମାନେ ନିଜେ ଡାକି ଆଣୁଛନ୍ତି—ମୁଁ କେବଳ ଏତିକି ଚାହୁଁଛି ଯେ, ସେମାନେ କେହି ହେଲେ ମୋ ଯୋଗୁଁ ଆହତ ନହୁଅନ୍ତୁ । ଯେଉଁ ଗଛରୁ ମୁଁ ଜନ୍ମ ହେଲି, ବଡ଼ ହେଲି ଓ ତୋ ଭଳି ରାଜକୁମାରକୁ ଆକର୍ଷିତ କଲି, ସେ ଗଛକୁ ଯେମିତି ମୋ'ର କାରଣରୁ କିଛି କ୍ଷତି ନ ହେଉ ।"

"ତା'ହେଲେ ତୋର ଚିନ୍ତା କରିବାର କିଛି ନାହିଁ । ମୋ ପାଖକୁ ଠିକ୍ ସମୟରେ ଖବର ପହଂଚିଯିବା କଥା—ଏତିକି ମନେରଖ, ମୁଁ ଓ ମୋର ଘୋଡ଼ା ଆଖିପିଛୁଳାକେ ସେଠି ପହଂଚିଯିବୁ ।

ପରଦିନ ଯେତେବେଳେ ସାହୁବାଁ ଶୁଣିଲା ଯେ ବାରିକ ଯାଇ ଚଂଧଡ଼ଙ୍କ ଘରେ ତା'ର ବାହାଘର ସ୍ଥିର କରି ଆସିଛି, ତା'ର ପରି କଟିଗଲା । ଗାଁରେ ବାହାଘର ପାଇଁ ବ୍ୟବସ୍ଥା ହେବାକୁ ଲାଗିଲା । ଯେମିତି ବାହାଘର ଦିନ ପାଖେଇ ଆସିଲା ସାହୁବାଁର ହୃଦୟ ଧୀରେ ଧୀରେ ବୁଡ଼ିଯିବାକୁ ଲାଗିଲା । ପଂଦର ଦିନ, ଚଉଦ ଦିନ···ସପ୍ତାହେ, ଅଧ ସପ୍ତାହ···ଦେଖୁ ଦେଖୁ ଏବେ କାଲି ବରଯାତ୍ରୀ ଆସିବା କଥା ।

ମିର୍‌ଜା ପାଖରୁ କିଛି ହେଲେ ଖବର ଆସିଲାନି । ବଦୋ ପିଉସୀ ନିଜେ ଯାଇ ମିରଜାକୁ ସବୁକଥା ଜଣେଇ ଦେଇ ଆସିଥିଲା । ମିର୍‌ଜା କହିଥିଲା, "ସାହୁବାଁର ବ୍ୟସ୍ତ ହେବାର କୌଣସି କାରଣ ନାହିଁ ।"

ବରଯାତ୍ରୀ ଆସି ପହଂଚଗଲେ । ସାଥିରେ ଅନେକ ନାଚଗୀତର ଦଳ ଆଆନ୍ତି । ଗାଁଯାକ ଗୀତ-ବାଜାରେ ଭୋଳ ହୋଇଗଲେ । କେବଳ ସାହୁବାଁ ଓ ବଦୋର ଛାତି ଧକଧକ ହେଉଥାଏ । ମିର୍‌ଜାର ବାଟକୁ ଚାହିଁ ଚାହିଁ ତାଂକର ଆଖିମାନ କ୍ଳାନ୍ତ ହୋଇ ପଡ଼ୁଥାଏ । ଦେଖୁ ଦେଖୁ ସଂଧ୍ୟା ଗାଢ଼ ହୋଇଆସିଲା ।

ଏହି ସମୟରେ ମୁଖା ପିନ୍ଧିଥିବା ଜଣେ ଘୋଡ଼ସବାର ଆସି ଘୋଡ଼ାଶାଳରେ ନିଜର ଘୋଡ଼ାଟିକୁ ବାନ୍ଧିଲା । ବବୋ ଦେହରେ ଯେମିତି ପ୍ରାଣ ପଶିଲା । ତା'ର ସ୍ୱାମୀ ଗୀତ ଶୁଣିବା ପାଇଁ ବାହାରି ଯାଇଥାଏ । ସେ ଅତିଥିକୁ ଘରଭିତରକୁ ଡାକିନେଇ ତାକୁ ସାହିବାଁର ବେଦନାମୟ କାହାଣୀ ଶୁଣେଇଲା ଓ ପଚାରିଲା ଯେ ସେ କ'ଣ କରିବାପାଇଁ ଚାହେଁ ।

"ମାଉସୀ, ସାହିବାଁକୁ ଏତିକି ମାତ୍ର କହିବୁ ଯେ ସେ ପ୍ରସ୍ତୁତ ହୋଇଥିବ । ପ୍ରଥମ ଥର କୁକୁଡ଼ା ଡାକିବା ବେଳକୁ ମୁଁ ଓ ମୋର ଘୋଡ଼ା ତା'ର ଦୁଆରମୁହଁରେ ପହଂଚି ଯାଇଥିବୁ । ସେତେବେଳକୁ ଲୋକମାନେ ମଧ୍ୟ ନିଘୋଡ଼ ନିଦରେ ଶୋଇପଡ଼ିଥିବେ ।"

ପ୍ରତିଟି ମୁହୂର୍ତ୍ତ ସାହିବାଁ ପାଇଁ ଶତାବ୍ଦୀଠାରୁ ମଧ୍ୟ ଦୀର୍ଘତର ମନେ ହେଉଥିଲା ।

"ମିର୍‌ଜା ଯଦି ନଆସିଲା ତା'ହେଲେ ମୁଁ କାଲି ସକାଳରେ ବସି ମୁଖିଆର କାନ୍ଧରେ ବୁହାହୋଇ ଯିବି—ଯଦି ମିର୍‌ଜା ନ ଆସେ ଓ ମୋ ପାଖରୁ ଦୂରକୁ ଚାଲିଯାଏ, ତା'ହେଲେ ମୁଁ ଆଉ କାହାପାଇଁ ବଞ୍ଚିରହିବି ?···ମିର୍‌ଜା ଯଦି ମୋତେ ଆପଣାର କରି ନେଇଯିବ ତା'ହେଲେ ମୁଁ ବନ୍ଦୀଶାଳରେ ମଧ୍ୟ ଜୀବନ କଟାଇଦେବି···"

ବାଜା ଶବ୍ଦରେ ଗାଁ ପୂରିଉଠିଲା । ସାହିବାଁ ଦୁଇଟିଯାକ ହାତ ପାପୁଲିରେ ଛାତିକୁ ଚାପିଧରିଲା, "ହାୟ···ହାୟ···ମିର୍‌ଜା ଆସିଲାନି ।" ସେ ସାଙ୍ଗେ ସାଙ୍ଗେ ମରିବା ପାଇଁ ଉପାୟ ଚିଂତା କରିବାକୁ ଲାଗିଲା ।

ବବୋ ଆସି ତାକୁ ନିଜ କୋଳକୁ ଟାଣିନେଲା । ପ୍ରିୟତମର ସଂବାଦ ଶୁଣିବା-କ୍ଷଣି ମରଣ କଥା ଭୁଲିଯାଇ ଜୀଇଁବାର କାମନା ପୁଣି ଥରେ ଜଳିଉଠିଲା ।

ଜହ୍ନରାତି ଅଧା ବିତିସାରିଥିଲା । ନାଚଗୀତ ଶୁଣିସାରି ଲୋକେ ଯେ ଯାହା ଘରେ ଯାଇ ଶୋଇଲେ । ଦିନତମାମ ଗୀତ-ବାଜାର କୋଲାହଳ ପରେ ଗାଁ ନିସ୍ତବ୍ଧ ହୋଇଗଲା । ଏଇ ନିସ୍ତବ୍ଧତା ଭିତରେ ଶୋଇରହି ସାହିବାଁ ଏକ ଶବ୍ଦକୁ ଅପେକ୍ଷା କରି ରହିଥାଏ । ସେ ଗଉଡ଼ାବେଳେ କ୍ଳାଂତ ହୋଇପଡ଼ିଥିବାର ଛଳନା କରି ପୋଷାକ ବଦଳାଇ ନଥିଲା ।

ଘୋଡ଼ାଟାପୁର ଟପ୍-ଟପ୍ ଶବ୍ଦ···

ସାହିବାଁ ଉଠି ଚାରିଆଡ଼କୁ ଅନାଇଲା । ସମସ୍ତେ ଶୋଇପଡ଼ିଥିଲେ । ଶୋଇପଡ଼ିଥିବା ମୁହଁମାନଂକୁ ଦେଖି ତା'କୁ ଭଲଲାଗିଲା । ସେ ମନେ ମନେ ଦୁଃଖିତ ହେଲା, "ଏମିତି କ'ଣ ହୁଅଂତାନି ଯେ ମୋତେ ଏ ଘରର ସଂପର୍କ ଛିନ୍ନ କରି ଯିବାକୁ ପଡ଼ଂତାନି ?" ତା'ପରେ ସେ ଅତି ସନ୍ତର୍ପଣରେ କବାଟ ଖୋଲି କାଂଥକୁ ଆଉଜି ଛିଡ଼ାହେଲା ।

ମୁହୂର୍ତ୍ତିକ ପରେ ଘୋଡ଼ା ଆସି ତା' ସାମ୍ନାରେ ଠିଆହେଲା । ମୁହଁ ଢାଂକା ହୋଇ-ଥିବା ଘୋଡ଼ସବାର ଜିନ୍‌ରୁ ଗୋଟାଏ ଗୋଡ଼ କାଢ଼ିନେଲା । ସାହିବାଁ ଜିନ୍ ଉପରେ ପାଦ ଦେଲା । ଘୋଡ଼ସବାର ବଢ଼ାଇଥିବା ହାତକୁ ଧରି ସେ ଡେଇଁପଡି ତା' ପଛରେ

ବସିପଡ଼ିଲା । ତା'ର ପ୍ରେମ ପ୍ରତି ମୌନ କୃତଜ୍ଞତା ଜ୍ଞାପନ କରିବା ଉଦ୍ଦେଶ୍ୟରେ ସାହିବାଁ ଘୋଡ଼ସବାରର ଅଂଟାକୁ ନିଜ ହାତରେ ଗୁଡ଼େଇ ଧରିଲା ଓ ତାକୁ ନିଜର ବାହୁପାଶରେ ବାଂଧିନେଲା । ଘୋଡ଼ସବାର ତଳକୁ ନଇଁଯାଇ ତା' ହାତରେ ଚୁମା ଦେଲା ।

ଗାଁର ସୀମା ଡେଇଁବା ପରେ ଘୋଡ଼ାଟି ପବନବେଗରେ ଉଡ଼ିବାକୁ ଲାଗିଲା । ମିର୍ଜା ଦେଖିଥିବା ସ୍ୱପ୍ନ ଏବେ ବାସ୍ତବ ପାଲଟିଥିଲା ।

କିଛି ଦୂର ଗଲା ପରେ ମିର୍ଜାର ସାହିବାଁ ଆଗରେ କରିଥିବା ଶପଥ ମନେପଡ଼ିଲା । 'ତୋ ଭାଇମାନଂକ ଉପରେ କିଛିହେଲେ ବିପଦ ଆସିବ ନାହିଁ ।'—କିଂତୁ ସେମାନେ ଯଦି ପଶ୍ଚାତ୍‌ଧାବନ କରଂତି, ତା'ହେଲେ ତ ଲଢ଼ିବାକୁ ପଡ଼ିବ-—ଏକଥା ଚିଂତାକରି ସେ ଦାନାବାଦର ରାସ୍ତା ତ୍ୟାଗ କରି ଦୂର ପଡ଼ିଥିବା ରାସ୍ତା ଆଡ଼କୁ ଲଗାମ ଟାଣିଦେଲା ।

ରାତି ପାହି ଫର୍ଚ୍ଚା ହେଲାବେଳକୁ ବାଟରେ ଏକ ଫୁଲଫଳଭରା ଉଦ୍ୟାନ ପଡ଼ିଲା । ଗଛଲତା ଉହାଡ଼ରେ ଘୋଡ଼ାକୁ ଠିଆକରି ମିର୍ଜା ତଳକୁ ଓହ୍ଲାଇଲା । ସେ ସାହିବାଁକୁ ତଳକୁ ଓହ୍ଲାଇ ସାରି ତାକୁ ଆଲିଂଗନ କଲା । ମିଳନର ସୁଖରେ ସବୁ ଚିଂତା ହଜିଗଲା ।

ସାହିବାଁ ମିର୍ଜା କାଂଧରୁ ଧନୁଟିକୁ କାଢ଼ିନେଲା । ମିର୍ଜା ଧନୁରେ ଏକ ଶର ଖଂଜିଦେଲା ।

"ଏଇ ଶର, ଏଇ ଧନୁ, ଏଇ ଘୋଡ଼ା, ମୋର ହାତ ଆଉ ତୁ ।" ମିର୍ଜା ସାହିବାଁର କପାଳରେ ଏକ ଚୁଂବନ ଦେଉ ଦେଉ କହିଲା—"ପୃଥିବୀ ଓ ସ୍ୱର୍ଗ—ସବୁକିଛି ଏବେ ମୋର ଆପଣାର ମନେହେଉଛି ।"

"ମିର୍ଜା, ଏଇଠି କାହିଁକି ଅଟକିଗଲୁ ? ଚାଲ୍ ଘରକୁ ଯିବା ।"

"ନା ସାହିବାଁ ! କିଏ ଜାଣେ ସେଠି କେଉଁ ବିପଦ ଆମ ପାଇଁ ଅପେକ୍ଷା କରିଛି । ସେଠି ପାଦ ଦେବା ଆଗରୁ ତୋତେ ସଂପୂର୍ଣ୍ଣ ଭାବରେ ମୋ ହୃଦୟରେ ଆବୋରି ନେବାର କାମନାକୁ ଚରିତାର୍ଥ କରିନିଏ । ମୁହୂର୍ତ୍ତକ ପାଇଁ ତୁ ସବୁକଥା ଭୁଲିଯା' । ମୋର ବ୍ୟଥିତ ହୃଦୟର ସାହିବାଁ ! ମୋର ବିରହର ବେଦନାକୁ ଏବେ ଉପଶମ କରିଦେ ।"

ହଠାତ୍ ଯେମିତି ସାହିବାଁର ପାଦମାନ ଭୂଇଁରୁ ଉପରକୁ ଉଠିଗଲା, ପ୍ରେମର ନିଷ୍କଳଂକ ଆକାଶ ଦେହକୁ ଡେଇଁପଡ଼ି ସେ ମିର୍ଜାର ବେକରେ ହାତ ଛଂଦିଦେଲା ।

ହୃଦୟର ପରିଣରେ ଯୁଗଯୁଗର ଶୂନ୍ୟତା ଭରିଉଠିଲା । ମିର୍ଜାର ଆତ୍ମା ସତେ ଯେମିତି ଏକ ଲୌହ ଶିକୁଳିର ବଂଧନରୁ ମୁକ୍ତ ହେଲା । ସେ କହିଲା, "ସାହିବାଁ ! ମୁଁ ଜୀବନ ଦେଇ ମଧ ଏଇ ମୁହୂର୍ତ୍ତକ ପାଇଁ ପାଇଥିବା ସ୍ୱର୍ଗର ମୂଲ୍ୟ ଶୁଝିବା ପାଇଁ ପ୍ରସ୍ତୁତ । ମୋର ମୁଂଡ ତୋର କୋଳ ଉପରେ ରଖିବା ପାଇଁ ଦେ । ତୁ ଉପରୁ ମୋ ଆଖିକୁ ଅନାଇ ଦେଖ ।"

ତା'ପରେ ମିର୍‌ଜା ଭୂଇଁରେ ଗଡ଼ିଗଲା । ସେ ପଛଆଡ଼କୁ ହାତ ବୁଲାଇ ନେଇ ସାହିବାଁକୁ ଦୁଇହାତରେ ଧରିଲା । କେତେବେଳେ ସାହିବାର ମୁଂଡ ଆପେ ଆପେ ତଳକୁ ନଇଁଯାଉଥିଲା ତ କେତେବେଳେ ମିର୍‌ଜା ତା' ମୁଂଡକୁ ଧରି ନିଜ ମୁହଁ ପାଖକୁ ଟାଣିଆଣୁଥିଲା ।

ପ୍ରେମର ଉଦ୍‌ବେଳିତ ଝରଣା କ୍ଲାଂତ ଅଂଗକୁ ନିସ୍ତେଜ କରି ପକାଇଲା । ଆଖି ବଂଦ ହୋଇ ଆସିଲା । ଧନୁ ଓ ତୂଣୀର ମିର୍‌ଜା ପିଠିରେ ଲାଗୁଥିବା ଦେଖି ସାହିବାଁ ତା'କୁ ମିର୍‌ଜାର ବେକରୁ କାଢ଼ି ଦେଇ ଗୋଟାଏ କଡ଼ରେ ଥୋଇଦେଲା । ସେ ମିର୍‌ଜାର ନିଦ୍ରାଗ୍ରସ୍ତ ସ୍ୱପ୍ନିଳ ରୂପକାଂତିକୁ ଦେଖି ଆତ୍ମବିହ୍ୱଳ ହୋଇଉଠିଲା ।

ପୁଣି ତା'ର ମନେପଡ଼ିଗଲା ଯେ ଲୋକେ ତା' ପଛରେ ତାକୁ ଖୋଜିବା ପାଇଁ ବାହାରି ଯାଇଥିବେ । ଟିକିଏ ମାତ୍ର ଶବ୍‌ଦରେ ସେ ଚମକି ଉଠୁଥିଲା ଓ ମିର୍‌ଜାକୁ ନିଦରୁ ଉଠାଇବା ପାଇଁ ଉଦ୍ୟତ ହେଉଥିଲା । ହେଲେ ସେସବୁ ଶବ୍‌ଦ କିଛି ନଥିଲା ।

"କାହା ପାଖରୁ ଖବର ପାଇ ସେମାନେ ଯଦି ଏଇପଟେ ଚାଲିଆସଂତି, ତା'ହେଲେ ?"

ସାହିବାଁ ତୂଣୀରରେ ଥିବା ତୀରଗୁଡ଼ିକ ଗଣିଲା । ବାରଟାରୁ ଅଧିକ ଥିଲା । ସେ ଧନୁରେ ହାତ ବୁଲାଇ ଆଣିଲା ।—କେତେ ନିଷ୍ଠୁର ଓ ନିର୍ଦ୍ଦୟ ଥିଲା ସେ ଧନୁ—ତା'ର ଭାଇ-ମାନଂକ କଥା ମନେପଡ଼ିଲା, ମିର୍‌ଜାର ଅବ୍ୟର୍ଥ ଲକ୍ଷ୍ୟ କଥା ମଧ୍ୟ ମନେପଡ଼ିଲା । ତା'ର ହୃଦୟ ଆଶଂକାରେ ଥରିଉଠିଲା । 'କିଂତୁ ମିର୍‌ଜା ମୋତେ କଥା ଦେଇଛି ।' ଏହା ଭାବି ସେ ଆଶ୍ୱସ୍ତିର ନିଃଶ୍ୱାସ ମାରିଲା । 'କିଂତୁ ସେମାନେ ଯଦି ହଠାତ୍ ଆସି ଆକ୍ରମଣ କରିଦିଅଂତି ତା'ହେଲେ ମିର୍‌ଜା କେମିତି ତା' କଥା ରଖିବ ? ସେମାନେ ସଂଖ୍ୟାରେ ମଧ୍ୟ ବେଶି ଥିବେ···ତୀର ମାଡ଼ରେ ତ ମିର୍‌ଜା ପୂରା ସୈନ୍ୟବାହିନୀକୁ ମଧ୍ୟ ହଟାଇ ଦେଇ ପାରିବ ।' ସାହିବାଁ ଧୀରେ ଧୀରେ ମିର୍‌ଜାକୁ ଉଠାଇଲା, "ଉଠ୍, ଏଠାରୁ ବାହାରିଯିବା ।"

କିଂତୁ ମିର୍‌ଜା କୌଣସି ଏକ ମଧୁର ସ୍ୱପ୍ନରେ ଲୀନ ହୋଇପଡ଼ିଥିଲା । ସେ ପଚାରିଲା, "କ'ଣ, କିଏ ଆସିଗଲା କି ?"

"ନା ।" ଏହା ଶୁଣି ସେ ପୁଣି ଶୋଇପଡ଼ିଲା ।

"ଭାଇମାନେ ନିଶ୍ଚୟ ପହଂଚିଯିବେ," ସାହିବାଁର ଭୟ ବଢ଼ି ଚାଲିଥାଏ, "ସଭିଏଁ ମରିଯିବେ !"···ସେ ଧୀରେ ଧୀରେ ମିର୍‌ଜାର ମୁଂଡକୁ ନିଜ ଜଂଘଉପରୁ ଉଠାଇ ତଳେ ଥୋଇଲା । ତା'ପରେ ସେ ତୂଣୀରଟିକୁ ଉଠାଇନେଲା ଓ କିଛି ଦୂରରେ ଥିବା ଏକ ଗଛ ଆରପଟେ ଏକ ଉଚ୍ଚ ଡାଳରେ ଝୁଲାଇ ଦେଲା । ତା'ପରେ ସେ ଫେରିଆସି ପୁଣି ମିର୍‌ଜାର ମୁଂଡକୁ ନିଜ କୋଳ ଉପରେ ରଖିଲା ।

"ଯଦି ସେମାନେ ନିରସ୍ତ୍ର ମିର୍‌ଜାକୁ ହତ୍ୟା କରଂତି ?" ଏହା ଭାବି ତା'ର ଛାତି

ଥରଉଠିଲା । 'ମୁଁ ମଝିରେ ଠିଆ ହୋଇ ପଡ଼ିବ । ମୋ ଶରୀରରକୁ ଭେଦକକଲାଯାଏ କାହାର ଖଂଡା ମିର୍‌ଜାକୁ ସ୍ପର୍ଶ କରପାରିବ ନାହିଁ । ତାଂକ ମୃତ୍ୟୁ ଯଦ ମୋତେ ଅସହ୍ୟ ମନେହେଉଛି, ସେମାନେ କ'ଣ ମୋର ମୃତ୍ୟୁକୁ ସହ୍ୟ କରପାରିବେ ?' ଏହା ଭାବି ସେ ନିଶ୍ଚିଂତ ହେଲା । ମିର୍‌ଜାର କପାଳରେ ପବନରେ ଅସ୍ତବ୍ୟସ୍ତ ହୋଇ ପଡ଼ିଥିବା କୁଞ୍ଚିକୁଞ୍ଚିକା କେଶରାଶିକୁ ସଜାଡ଼ିଦେଇ ତା'ର କପାଳକୁ ଚୁଂବନ କଲା ।

ସାହିବାଁ ଘୋଡ଼ାଟାପୁର ଶବ୍ଦ ଶୁଣି ପାରିଲା । "ସେମାନେ ଆସିଗଲେ", ସେ ସବା ଆଗରେ ଥିବା ତା'ର ସାନଭାଇ ଛିଂଦାକୁ ଚିହ୍ନିପାରିଲା । ଭୟରେ ତା'ର ହାତଗୋଡ଼ ନିଷ୍ଫଳ ହୋଇ ପଡ଼ିଲା । ସେ ମିର୍‌ଜାକୁ ହଲାଇ ହଲାଇ ଉଠାଇଲା, "ଉଠ୍, ଘୋଡ଼ାରେ ଚଢ଼ି ଏଠୁ ପଳାଇବା ।"

"ତୂଣୀର ?—ମୋର ତୂଣୀର—ସାହିବାଁ—ଏଇଠା ତ ମୋ ବେକରେ ତୂଣୀର ଥିଲା । ମୁଁ କାହାକୁ ମାରିବ ନାହିଁ—ମୋର ଅବ୍ୟର୍ଥ ତୀରମାନଂକର ଡାକରା ଶୁଣିଲେ ସେମାନେ ନିଜର ଅବସ୍ଥା ବୁଝିପାରିବେ । କୁଆଡ଼େ ଗଲା ମୋର ତୂଣୀର ?"

"ମିର୍‌ଜା, ମୋତେ କ୍ଷମା କରିଦେ । ଭାଇମାନଂକର ମୋହରେ ପଡ଼ି ମୁଁ ତୋ ପ୍ରତି ଅବହେଳା କରିଛି । ତୂଣୀରଟିକୁ ମୁଁ ତୋ ହାତରୁ ଛଡ଼ାଇ ନେଇଛି । ଏବେ ତା' ଆଉ କୌଣସି କାମକୁ ଆସିବ ନାହିଁ । ଏଇ ସେମାନେ ଆସିଗଲେଣି—ଘୋଡ଼ା ଉପରକୁ ଡେଇଁ-ପଡ଼ ।"

"ନା, ସାହିବାଁ ! ତୋତେ ଛାଡ଼ି ମୁଁ ଚାଲିଯାଇ ପାରିବ ନାହିଁ ।" ସେ ଧାଇଁଯାଇ ଖଂଡାଟିକୁ ନେଇ ଆସିଲା, "ସାହିବାଁ ! ଏବେ ତୁ ଖାଲି ଗଣିଯା । ଯଦ ତୋ'ର କୌଣସି ଭାଇକୁ ଆଘାତ ଲାଗେ, ତା'ହେଲେ ମୋତେ କ୍ଷମା କରିବୁ । କିଂତୁ······କିଂତୁ ମୁଁ ଲଢ଼ି ଲଢ଼ି ହିଁ ମରିବ ।"

ସାହିବାଁ ତା'ର ଦେହ ଉପରେ ଲେଟିଗଲା । ମିର୍‌ଜା ତାକୁ ଗୋଟାଏ କଡ଼କୁ ଘୁଞ୍ଚାଇ ଦେଲା । "ସେମାନେ ତୋତେ ବା କାହିଁକି ମାରିବେ—ମୋ ପାଖରୁ ତୋତେ ଟାଣିନେଇ ଖଂଡାଟିକୁ ମୋ ଛାତିରେ ଭୂଷିଦେବା ପାଇଁ ଜଣେ ନୁହେଁ, ଦୁଇଜଣ ଲୋକଂକର ଦରକାର ହେବ । ଘୁଞ୍ଚିଯା···ସାହିବାଁ ! ସେମାନେ ନିକଟକୁ ଆସିଗଲେଣି । ମୋତେ ମୋ ଭାଗ୍ୟ ସହିତ ଯୁଝିବାକୁ ଦେ !"

ମିର୍‌ଜା ଖଂଡାଟିକୁ ବାଗେଇ ଧରିଲା । ସାତଜଣଯାକ 'ଧମ୍' ଶବ୍ଦ କରି ଘୋଡ଼ାରୁ ଡେଇଁପଡ଼ି ତଳେ ଛିଡ଼ାହେଲେ । ଖଂଡାମାନ ଚମକି ଉଠିଲା । ସାହିବାଁ ଦୌଡ଼ିଯାଇ ମଝିରେ ଛିଡ଼ା ହୋଇପଡ଼ିଲା ।

"ହେ ବୀର ଭାଇମାନେ—ନା, ମୁଁ ଏବେ ପଳାଇଯାଇ ପାରିବ, ନା ମିର୍‌ଜା ଖସି-ଯାଇ ପାରିବ । ତରବର ହେବାର କୌଣସି କାରଣ ନାହିଁ । ମୋର ଭାଇ···।

"ଆମେ କାହା କଥା ଶୁଣିବୁ ନାହିଁ । ଆମେ ଚୋରକୁ ପାଇଯାଇଛୁ ।" ଏହା ତା'

ଭାଇର ସ୍ୱର ନଥିଲା । ସାହିବାଁ ତାକୁ ଚହ୍ନି ନଥିଲା । ସେ ଯଦି ଦାଢରେ ଘର ଛାଡ଼ି ଚାଲି ଆସି ନ ଥାନ୍ତା ତା'ହେଲେ ତାହିର୍ ନାମକ ଏହି ବ୍ୟକ୍ତି ହିଁ ତା'ର ସ୍ୱାମୀ ହୋଇଥାଆନ୍ତା ।

"ମୋର ଭାଇମାନେ ! ମୁଁ ତୁମକୁ କହୁଛି, ତୁମପାଇଁ ମୁଁ ମିର୍ଜା ସହିତ ବିଶ୍ୱାସ-ଘାତକତା କରିଛି ।—"

"ତୁ ଆମ ସାଥିରେ ଖୁବ୍ ବିଶ୍ୱାସର କାମ କରିଦେଇ ଆସିଛୁ ।" ସାନ ଭାଇ କହିଲା ।

"ଜୀବନରେ ମୁଁ ଥରେ ମାତ୍ର ମୋର ହୃଦୟ ପ୍ରତି ବିଶ୍ୱସ୍ତ ହୋଇଛି । ଜୀବନସାରା ମୁଁ ସବୁବେଳେ ଅନ୍ୟର ବିଶ୍ୱାସ-ପାତ୍ର ହୋଇ ରହିଥିଲି । ଛାଡ଼ ସେ କଥା—ଏବେ ଯଦି ମୁଁ ମିର୍ଜାର ତୀରସବୁ ଲୁଚାଇ ଦେଇ ନଥାଆନ୍ତି, ତୁମ ଭିତରୁ ଜଣେ କେହି ହେଲେ ଜୀବନ ଧରି ଛୁଡ଼ା ହୋଇ ନ ଥା'ନ୍ତ । ମୋର କଥା ମାନ, ମୁଁ ଆପଣାର ବିଶ୍ୱାସ ଯୋଗୁଁ ଏମିତି କରିଥିଲି ।"

"ତୁ କ'ଣ ଚାହୁଁ କହ ?" ବଡ଼ଭାଇ ପଚାରିଲା ।

"ଯ୍ୱା'କୁ ଆମେ ଜୀଅନ୍ତା ଛାଡ଼ିଲେ ତ ଯାଇ ସେ ବଞ୍ଚିବ—ଇଏ ଆମର ବୈରୀ !" ତାହିର୍ ଆଉ ଚୁପ୍ ହୋଇ ରହିପାରିଲାନି । ମିର୍ଜାର ପେଟକୁ ଲକ୍ଷ୍ୟ କରି ସେ ନିଜର ଖଣ୍ଡାଟିକୁ ଫିଙ୍ଗିଦେଲା ।

ଲକ୍ଷ୍ୟ ବ୍ୟର୍ଥ ହେଲା । ହେଲେ ମିର୍ଜାର ରକ୍ତ ତାତି ଉଠିଲା । ସେ ବାଘ ଭଳି ଗର୍ଜିଉଠି ଆଗକୁ ମାଡ଼ିଆସିଲା, "ସାହିବାଁ ! ମୁଁ ଏଇ ଲୋକଟି ସମ୍ପର୍କରେ ତୋତେ କୌଣସି କଥା ଦେଇନି ।" ଥରେ ମାତ୍ର ଖଣ୍ଡାମାଡ଼ରେ ସେ ତାହିର୍‌କୁ ଧରାଶାୟୀ କରିଦେଲା ।

ଏହା ଦେଖି ସମସ୍ତେ ତା'ର ଚାରିପଟେ ଘେରିଗଲେ । ଖଣ୍ଡା ଶବ୍ଦରେ ସେଇ ସ୍ଥାନଟି ମୁଖରିତ ହୋଇଉଠିଲା । ମିର୍ଜା ଖଣ୍ଡାଚାଳନାରେ ମଧ୍ୟ ଦକ୍ଷ ଥିଲା । ସେ ସମସ୍ତଙ୍କର ଖଣ୍ଡାମାଡ଼କୁ ପ୍ରତିରୋଧ କରିବାକୁ ଲାଗିଲା ।

ସାହିବାଁ ଦୁଃଖରେ ବିଳାପ କରିବାକୁ ଲାଗିଲା । ଭାଇମାନଙ୍କର ପାଦ ଧରିଲା, କାକୁତିମିନତି କଲା, "ନା'ରେ ଭାଇ ନା—ମୁଁ ନିଜେ ତୁମମାନଙ୍କ ପାଖରେ ଦୋଷୀ—ଯ୍ୱା' ସାଥିରେ ମଧ୍ୟ ମୁଁ ହିଁ ନିଜେ କପଟ କରିଛି । ତାକୁ ମୁଁ ନିଜେ ହିଁ ଡାକିଥିଲି—ଭାଇ, ତୋ' ରାଣ—ନା ଭାଇ ନା—ନିଜ ଭଉଣୀ ପାଇଁ ଅନ୍ତତଃ..."

ଖଣ୍ଡା ଶବ୍ଦ ଭିତରେ ଅନୁନୟର କ୍ଷୀଣସ୍ୱର ଲୁଚିଗଲା । ଛଅ ଛଅଟି ଖଣ୍ଡାର ପ୍ରହାର ପ୍ରତିରୋଧ କରୁ କରୁ ଶେଷରେ ମିର୍ଜାର ହାତମାନ ଅବଶ ହୋଇ ଆସିଲା । ଏବେ ସେ ଆଉ ଠିକ୍ ଭାବରେ ଖଣ୍ଡା ମାଡ଼କୁ ରୋକି ପାରି ନଥିଲା—କେତେବେଳେ ହାତରୁ ରକ୍ତର ଧାର ବହିଯାଉଥାଏ, କେତେବେଳେ କାନ୍ଧରେ ଆଘାତ ଲାଗୁଥାଏ, କେତେବେଳେ ଛାତି ଚିରିହୋଇ ଲହୁଲୁହାଣ ହୋଇଯାଉଥାଏ । ସାହିବାଁ ଆଉ ସେ ଦୃଶ୍ୟ ସହ୍ୟ କରି ପାରିଲା ନାହିଁ । ସେ ମଝିରେ ପଶିବା ପାଇଁ ଚେଷ୍ଟା କରୁଥାଏ ।

"ସ୍ୱା'କୁ ଠିକେ ଜୋର୍ କରି ଧରିରଖ", ତା'ର ଜଣେ ଭାଇ ସାହେବାଁକୁ ଜାବୁଡ଼ି ଧରି ଅଚଳ କରିଦେଲା ।

ମିର୍ଜା ହୃଦୟଙ୍ଗମ କରୁଥିଲା ଯେ ତାକୁ ଲାଗୁଥିବା ପ୍ରତିଟି ଆଘାତ ସହିତ ସାହେବାଁର ଅଂତର ଚିତ୍କାର କରିଉଠୁଛି । ଶେଷରେ ମିର୍ଜାର ଗ୍ରୀବରେ ଏକ ଗଭୀର ଆଘାତ ଲାଗିଲା ଓ ସେ ତଳେ ପଡ଼ିଗଲା । ତା' ହାତରୁ ଖଂଡାଟି ଖସିପଡ଼ିଲା ।

ସାହେବାଁ ଦେହରେ ଯେମିତି ହିଂସ୍ର ବାଘୁଣୀର ବଳ ଚାଲିଆସିଲା । ସେ ଭାଇର କବଳରୁ ମୁକୁଳିଯାଇ ମିର୍ଜା ଆଗରେ ଠିଆ ହୋଇ ପଡ଼ିଲା ଓ ମିର୍ଜାର ଖଂଡାଟିକୁ ନିଜ ହାତରେ ମୁଠେଇ ଧରିଲା, "ଏବେ କେହିହେଲେ ମୋ ପାଖକୁ ଆସନା—ମୁଁ ଏବେ ସାହେବାଁ ନୁହେଁ—ମୁଁ ପାଗଳ ହୋଇଯାଇଛି ! ତୁମେମାନେ ମିର୍ଜାକୁ ହତ୍ୟା କରିଛ— ଏବେ ସେ କେତୋଟି ମାତ୍ର ମୁହୂର୍ତ୍ତର ଅତିଥି—ମୁଁ ତାକୁ ଯେଉଁ ଦଗା ଦେଇଛି, ସେଇଥିପାଇଁ ମୋତେ ତା' ପାଖରୁ କ୍ଷମା ମାଗିନେବାକୁ ଦିଅ ।"

ଏତେ ବେଦନାମୟ ଓ ଏମିତି ନିର୍ଭୀକତା ଆଗରେ କିଏ ବା ସ୍ତବ୍ଧ ହୋଇ ନଯିବ ? ସେମାନେ ସବୁ ପଛଘୁଂଚି ଦେଲେ ।

ସାହେବାଁ ରକ୍ତରେ ଜୁଡ଼ୁବୁଡ଼ୁ ହୋଇ ଯାଇଥିବା ମିର୍ଜାର ବାଳକୁ ତା' କପାଳରୁ ହଟାଇଦେଲା । ନିଜର ଓଢ଼ଣୀରେ ତା' ଆଖିରୁ ରକ୍ତସବୁ ପୋଛିଦେଲା ଓ ତା'ର କପାଳକୁ ଚୁଂବନ କଲା ।

"ମିର୍ଜାସ୍ୱା !"

",ହଁ ସାହେବାଁ !"

"ମୋତେ କ୍ଷମା କରିଦେବୁ ?"

"କେଉଁଥିପାଇଁ କ୍ଷମା ମାଗୁଛୁ ? ମୁଁ ମୋ ଜୀବନର ସବୁ ମୂଲ୍ୟ ଆଦାୟ କରି ଦେଇଛି— ଏକ ଦେବୀର ସ୍ପର୍ଶ ଲାଭ କରିଛି···"

"ମୁଁ ତୋତେ ମରଣ ଛଡ଼ା ଆଉ ତ କିଛି ଦେଇପାରିଲିନି ।"

"ନା, ତୁ ମୋତେ ଅମର କରିଦେଇଛୁ ।"

"ମିର୍ଜାସ୍ୱା ! ତୁ କ'ଣ କ୍ଷଣକ ପାଇଁ ଆଖି ଖୋଲି ପାରିବୁ ?"

"ଆଖି ବଂଦ ହୋଇଯାଉଛି; କିଂତୁ ତୁ ଯଦି ଚାହୁଁଛୁ ଯେ ଆଖି ଖୋଲି ରହିବ ତା' ହେଲେ ତୁ ମୋ ହାତକୁ ଧରି ରଖିଥା ।"

ସାହେବାଁ ତା'ହାତକୁ ଉଠେଇ ନେଇ ଚୁଂବନ କଲା ।

"ତୋ ପାଇଁ ମୁଁ ପ୍ରାଣ ହାରିଦିଏ, ମିର୍ଜାସ୍ୱା ! ମୁଁ ଚାହେଁ ତୁ ଦେଖିନେ ଯେ ମୁଁ ତୋ ସହିତ ନୁହେଁ, ମୋ ନିଜର ଭାଗ୍ୟ ସହିତ ବିଶ୍ୱାସଘାତକତା କରିଛି । ତୁ ଭୁଲ୍ ବୁଝିବୁନି ଯେ ତୋ'ଠାରୁ ବଳି ମୋର ଭାଇମାନେ ମୋର ଅଧିକ ପ୍ରିୟ ଥିଲେ—ନିଜର ଖୁସି ବଦଳରେ ଅନ୍ୟକୁ ଆନଂଦ ଦେବାର ଓ ଅନ୍ୟର ଆନଂଦକୁ ଦେଖି ଖୁସି ହେବାର ଅଭ୍ୟାସ ହିଁ ମୋର

କାଳ ହେଲ । ମୁଁ ତୋ'ର । ତୋ ପାଖରୁ ମୋତେ କେହୁ ହେଲେ ଛଡ଼ାଇ ନେଇ ପାରିବେନ ।...''

ଓ ସାହୁବାଁ ଉଠିପଡ଼ି ମିର୍ଜାର ଉନ୍ମୀଳିତ ଆଖି ସାମ୍ନାରେ ଛୁଡ଼ା ହେଲ । ତା' ହାତରେ ମିରଜାର ଖଂଡା ଥିଲ । ସେ ଖଂଡାର ବେଣ୍ଟକୁ ଚୁଂବନ କରି ନିଜର ପେଟରେ ଖଂଡାଟି ଭୁସିଦେଲା ଓ ମିର୍ଜାର ଦେହକୁ ଲଗି ଭୂଇଁରେ ଟଳିପଡ଼ିଲ ।

---

ଅମୃତା ପ୍ରୀତମ୍

# ସପ୍ତସୀ ପୂଜା

ରାଜଉଦ୍ୟାନର ଗଛମାନଂକରେ ଯେତେବେଳେ ଫୁଲ ଫୁଟୁଥିଲା ରାଣୀ ରାଜପ୍ରାସାଦର ଝରକା ପାଖରେ ଠିଆ ହୋଇ ଭାଂଗିଯାଇଥିବା ଲତା ପରି ବିଷଣ୍ଣ ହୋଇ ପଡ଼ୁଥିଲେ—"ପ୍ରଭୁ ! ପୃଥିବୀର ସବୁକିଛି ଶାଗୁଆ ହୋଇଗଲା; ଅଥଚ ମୋର କୋଳ କାହିଁକି ଖାଲି ରହିଗଲା ?"

ଏବଂ ଗଛଲତା ଦେହରେ ପ୍ରତିବର୍ଷ ଆସୁଥିବା ଫୁଲର ଋତୁ ଏକଦା ରାଣୀଂକ ଦେହରେ ମଧ ଆସିଗଲା । ଆଂବ ବଉଳରେ ଲଦି ହୋଇ ପଡ଼ିଥିବା ଡାଳିଭଳି ରାଣୀ କ୍ରମେ କ୍ରମେ ନଇଁପଡ଼ିଲେ ।

ଉଡ଼ଂତା ଆଶାର ପକ୍ଷୀ ଆସି ତାଂକର ଝରକାରେ ବସିଥିଲା । ସେ ନିଜର ପାପୁଲିରେ ମେହଂଦୀ ବୋଲି ଭାବୁଥିଲେ—"ତାକୁ ମୋ ହାତରୁ ଖୁଂପି ଖୁଂପି ଖାଇବାପାଇଁ ଦେବି......"

ଦର୍ପଣ ଆଗରେ ଛିଡ଼ାହୋଇ ପ୍ରସାଧନ କଲାବେଳେ ଗାଢ଼ ଲାଲ ରଂଗ ଭଳି ଏକ ଲୋରିର ଗୁଣୁଗୁଣୁ ସ୍ୱର ତାଂକର ଓଠରେ ଫୁଟି ଉଠୁଥିଲା ।...

ରେଶମର ଝୁଲଣାରେ ମୋତି-ମାଳମାନ ବାଂଧି ସେ ପ୍ରତୀକ୍ଷାର ଦିନଗୁଡ଼ିକ ମୋତିକଣା ଭଳି ଗଣିଯାଉଥିଲେ ।

ଦିନେ ମୋତିର ହାର ଗୁଂଥୁ ଗୁଂଥୁ ତାଂକ ହାତର ସୂତା ଛିଂଡିଗଲା । ମୋତିଯାକ ଚଟାଣରେ ବିଛି ହୋଇଗଲା । ଦାସୀମାନେ ଶଂଖମର୍ମର ଚଟାଣରୁ ମୋତିଗୁଡ଼ିକ ଉଠାଇବାକୁ ଲାଗିଲେ । କିଂତୁ ଛିଂଡା ସୂତାଭଳି ରାଣୀ ଚିଂତାରେ ବୁଡ଼ିଗଲେ—"ମୋ କର୍ମର ମୋତି ସବୁ ମୋ ହାତରୁ ଖସି ନଯାଉ..."

ଭିଁବୋର ସହରର ରାଜା ନିଜର ଗଂଡାଘର ଖୋଲି ଦେଇଥିଲେ । ଲୋକେ ଖାଲିହାତରେ ଆସୁଥିଲେ ଓ ଅଂଟି ପୂରେଇ ଯାଉଥିଲେ । ରାଜାରାଣୀ ମନ୍ଦିରରେ ଭଗବାନଂକ ଆଗରେ ହାତ ପତେଇ କହୁଥିଲେ, "ଆମେ ପୃଥିବୀରେ ରାଜା; କିଂତୁ ତୋ' ପାଖରେ ଆମେ ଭିକାରି । ହେ ପ୍ରଭୁ, ତୁ ଆମର ଅଂଟି ଭରିଦେ ।"

ଏବଂ ଦ୍ୱିତୀୟବାର ଚାଂଦଭଳି ଏକ ଝିଅ ତାଂକ କୋଳକୁ ପୂର୍ଣ୍ଣ କଲା ।

"ଇଏ ତ ମୋର କଳ୍ପନାଠାରୁ ମଧ୍ୟ ଅଧିକ ସୁଂଦର ହୋଇଛି ।" ରାଣୀ ବାରଂବାର ତା'ର ମୁହଁକୁ ଦେଖୁଥିଲେ । ତାଂକର ପ୍ରତ୍ୟେକ ଅଂଗପ୍ରତ୍ୟଂଗ ଖୁସିରେ ଲୋମ ଗାଇ-ଉଠୁଥିଲା ।

ଧମନୀରେ ବହୁଥିବା ରକ୍ତ ଦୁଧ ପାଲଟି ରାଣୀଂକର ସ୍ତନରେ ବହିବାକୁ ଲାଗିଲା । ଦିନେ ଦୁଧ ପିଇ ପିଇ ସସ୍ସୀର ମୁହଁରୁ ଉଛୁଳିଯାଇ ଦୁଧଫୋଟାମାନ ଚଟାଣରେ ପଡ଼ିଲା । ଦୁଧଫୋଟାମାନ ଧଳା ମୋତିକଣା ପରି ଦିଶୁଥିଲା । ରାଣୀଂକର ହଠାତ୍ ସେଦିନ କଥା ମନେ ପଡ଼ିଗଲା; ଯେଉଁଦିନ ତାଂକ ହାତରୁ ମୋତି ଗୁଂଥାହୋଇଥିବା ସୂତାଟି ଛିଂଡ଼ିଯାଇ ସବୁ ମୋତିତକ ଚଟାଣରେ ବିଛି ହୋଇ ପଡ଼ିଥିଲା । ଅଜଣା ଆଶଂକାରେ ରାଣୀ ଝିଅକୁ ନିଜ ସ୍ତନରେ ଜାକି ଧରିଲେ । ବିଚାରୀ ତାଂକର ମୁହଁର ଲୋମଗୁଡ଼ିକରେ କଂପନ ବାରିହେଉଥିଲା···

ସକାଳେ ରାଜା ଦରବାରକୁ ଗଲେ । କିଂତୁ ରାଜାଂକୁ ସାଂଗେ ସାଂଗେ ରାଜମହଲକୁ ବାହୁଡ଼ି ଆସିବାର ଦେଖି ରାଣୀ ବିସ୍ମିତ ହେଲେ । ରାଜା ଫେରିଆସି ସସ୍ସୀର ଝୁଲଣ ପାଖରେ ଏଭଳି ମୁଦ୍ରାରେ ବସିଗଲେ ଯେ ଦେଖିଲେ ମନେହେବ କେହି ଜଣେ କବର ପାଖରେ ବସିଛି ।···

ଚଂଦନରଙ୍ଗା ରାଣୀଂକ ଶରୀର କଂପିଉଠୁଥିଲା । ସେ କେତେବେଳେ ଝିଅକୁ ତ କେତେବେଳେ ତା' ବାପାକୁ ଅନାଇ ରହୁଥିଲେ । ଶେଷରେ ରାଜା କହିଲେ, "ଜାଣିଛ, ଆମର ଏଇ ଝିଅ ହେଉଛି ଆମ କୁଳର କଳଂକ । ମୁଁ କ'ଣ କରିବି ? ଆଜି ଜ୍ୟୋତିଷମାନେ ଗଣନା କରି କହିଲେ ଯେ, ସେ ଯୁବତୀ ହେଲା ପରେ ସମସ୍ତଂକଠାରୁ ଦୂରେଇଯିବ । କୌଣସି ଏକ ପୁରୁଷର ପ୍ରେମରେ ସେ ଘରଦ୍ୱାର ସବୁ ଛାଡ଼ିଦେବ ଓ କୁଳର ମାନ-ମର୍ଯ୍ୟାଦାକୁ ମଧ୍ୟ···"

"କଳଂକ ତ ଚଂଦ୍ର ଦେହରେ ମଧ୍ୟ ଅଛି···" ରାଣୀ ଭାଂଗିଯାଇଥିବା ଲତାପରି ରାଜାଂକ ପାଦତଳେ ଗଡ଼ିଗଲେ ।

"ଚଂଦ୍ର ତାରାଂକର ଅପରାଧକୁ କ୍ଷମା କରିଯାଏ ରାଣୀ; କିଂତୁ ମଣିଷଜାତିର ଦୋଷକୁ ନୁହେଁ···"

"ଇଏବି ତ ଚାଂଦଠାରୁ ଊଣା ନୁହେଁ···" କହୁ କହୁ ରାଣୀ ଅଚେତ ହୋଇଗଲେ ।

ଆପଣାର କୋଳର ସଂତାନକୁ କିଏ କ'ଣ ନିଜ ହାତରେ ହତ୍ୟା କରିପାରେ ? ଏଣୁ ମଂତ୍ରୀ ଓ ପାରିଷଦବର୍ଗଂକ ସହିତ ପରାମର୍ଶ କଲାପରେ ରାଜା ଚଂଦନକାଠର ଏକ ସିଂଧୁକ ତିଆରି କରେଇଲେ । ସେଥିରେ ହୀରା ମୋତି ଖଂଜା ହୋଇଥିଲା । ରେଶମର ବିଛଣାଟିଏ ବିଛେଇ ଦେଇ, ସୁନାମୋହର ଥିବା ଥଳିଟିଏ ପାଖରେ ରାଜା ରକ୍ତ-ମାଂସର ପୁତୁଳାଭଳି ନିଜର ଝିଅକୁ ଶୁଆଇଦେଲେ । ସେ ସିଂଧୁକଟିକୁ ନଦୀରେ ଭସାଇ ଦେଇ

ପ୍ରାର୍ଥନା କଲେ "ହେ ଭଗବାନ୍ ! ସ୍ତ୍ରୀ'କୁ ଏବେ ତୋ ହାତରେ ସମର୍ପିଦେଲି ।"

ଘରଣୀଂକର ଚେତା ହେଲା ପରେ ତାଂକ ମୁହଁର ଲୋଣ୍ଡା ବେଦନାର ବିଳାପ ପାଲଟିଗଲା : "ଆହା ରେ ମୋ ଝିଅ ! ମୁଁ ତୋତେ କେଉଁ ସବାଶରେ ବସେଇ ଦେଲି । କର୍ମୀରମାନେ ସବାଶବାହକ ହୋଇ ତୋ'ର ସବାଶକୁ ବୋହି ନେଇ ନ ଯାଆଂତୁ ।···"

ସହର ବାହାରର ନଈଘାଟରେ ଅତ୍ତା ଧୋବା ଲୁଗା ଧୋଉଥିଲା । ନଈ ମଝିରେ ତାକୁ ଏକ ଉଜ୍ଜ୍ୱଳ ବସ୍ତୁ ଦେଖାଗଲା । ସେ ବାରଂବାର ଆଖି ମିଟିମିଟି କରି ଭଲଭାବରେ ଦେଖିଲା । ଦୁଇକୂଳ ଭର୍ତ୍ତି ନଈରେ ରଂଗିନ ସ୍ୱପ୍ନଭଳି ଏକ ବସ୍ତୁ ଭାସିଯାଉଥିଲା···

ମୋତି ମାଣିକ୍ୟ ଖଂଜାହୋଇଥିବା ସିଂଧୁକରେ ମୂର୍ଯ୍ୟକିରଣ ପଡ଼ି ଚକ୍‌ଚକ୍ କରୁଥିଲା । ଅତ୍ତା ଧୋବା ଭଗବାନଂକ ନାମ ସ୍ମରଣ କରି ପାଣି ଭିତରକୁ ଡେଇଁପଡ଼ିଲା ଓ ସିଂଧୁକ ନିକଟକୁ ପହଁଚିବାକୁ ଲଗିଲା । ସେ ପାଖକୁ ଯାଇ ସିଂଧୁକଟିକୁ ଧରିପକାଇଲା । କୂଳକୁ ଫେରି ସିଂଧୁକଟିକୁ ଖୋଲିଦେବାକ୍ଷଣି ଅନେକ ସମୟ ପର୍ଯ୍ୟଂତ ସେ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲା । ତା'ର ପରତେ ହେଉ ନଥିଲା ତା'ଭଳି ଅଭାଗା ନିଃସନ୍ତାନର ଘରକୁ ଭାଗ୍ୟଦେବତା ଅବା ସ୍ୱୟଂ କେମିତି ଚାଲିଆସିଲେ ! ଦରିଦ୍ରର ଭଗବାନ୍ ହଠାତ୍ ଜୁଂଦିଭଳି ଝିଅଟିଏ ତା' କୋଳକୁ ବଢ଼ାଇ ଦେଇଥିଲେ ।

"ନିଜର ଭାଗ୍ୟକୁ କିଏ ଅବା ଆଜି ନିଜ ହାତରେ ପାଣିରେ ଭସାଇ ଦେଇ ପାରିଲା !" ଅତ୍ତା କିଛି ବୁଝିପାରୁନଥିଲା; କଂଢ଼ ଆଂଗୁଠି ଚୁଚୁମୁଥିବା ସସ୍ମୀକୁ ସେ ବାରଂବାର କୋଳାଗତ କରୁଥିଲା ଓ ଖୁସିରେ ଗଦ୍‌ଗଦ୍ ହୋଇପଡ଼ୁଥିଲା ।

"ଆହା କେତେ ସୁଂଦର ହୋଇଛି !" ଅତ୍ତାର ଘରଣୀ ସସ୍ମୀକୁ ତା'ର ଝୁଲିଣରେ ଶୁଆଇଦେଲା ବେଳକୁ ତା'ର ଶୁଖିଯାଇଥିବା ଧମନୀରେ ମମତାର ଧାରା ସୋତ ବହିବାକୁ ଲଗିଲା ।

ଝିଅର ବେକରେ ଥିବା ସୁନାର ହାରରେ ଏକ ପଦକ ଲଗିଥିଲା । ଅତ୍ତା ସେଥିରେ ସସ୍ମୀର ନାମ ଲେଖାଥିବାର ଦେଖିଲା ଓ ପଦକଟିକୁ ସିଂଧୁକରୁ ପାଇଥିବା ହୀରାମୋତି ସହିତ ଗୋଟାଏ ବୁଜୁଳାରେ ବାଂଧି ଘର ପଛପଟେ ଥିବା ଏକ କୋଠରିରେ କିଏ ଜଣେ ଜମା-ଦେଇଥିବା ବସ୍ତୁ ଭଳି ଅତି ଯତ୍ନରେ ସାଇତି ରଖିଦେଲା । "ଝିଅ ! ଏଇ ହେଉଛି ତୋ'ର ଯୌବନର ପୁଞ୍ଜି । ବଡ଼ ହେଲେ ତୁ ନିଜେ ତାକୁ ପିନ୍ଧିବୁ ।"

ଅତ୍ତା ଭୋଗ ଚଢ଼ାଇଲା ଓ ବଂଧୁବାଂଧବମାନଂକୁ ବାଂଟିଲା । ଶିରଣିର ପ୍ରଥମ ଥାଳି ସେ ନଦୀ ଉଦ୍ଦେଶ୍ୟରେ ଚଢ଼ାଇଲା ଓ ଭଗବାନଂକ ଉଦ୍ଦେଶ୍ୟରେ ବାରଂବାର କହୁଥାଏ— "ଆଜିଠାରୁ ପ୍ରକୃତରେ ମୁଁ ଶାଇଁରହିବାର ଯୋଗ୍ୟ ହୋଇଗଲି । ଭାଇମାନେ ! ମୋର ସୁପ୍ତ ଭାଗ୍ୟ ଆଜି ଚେଇଁଉଠିଛି ।"

ଅଚ୍ଛୁତାର ସ୍ତ୍ରୀ ଯେତେବେଳେ ଶିଶୁକନ୍ୟାକୁ ନିଜ ଗୁଣ୍ଠରେ ଜାକିଧରିଲା, ତା'ର ଶୁଖିଲା ଅନମାନଂକରେ ଦୁଧ ବହିଆସିଲା । ମନେହେଲା, ଯେମିତି ତା'ର ନିଷ୍ଫଳ ଯାଉଥିବା ବ୍ୟର୍ଥ ଶରୀରରେ ଏକ ପବିତ୍ର ଫୁଲ ଫୁଟିଉଠିଛି ।

ଏଭଳିଭାବରେ ରାଜପ୍ରାସାଦର ଜ୍ୟୋତି ଦରିଦ୍ର ଧୋବାର ପ୍ରାଙ୍ଗଣରେ ବଢ଼ ହେବାକୁ ଲାଗିଲ ।

ସସ୍‌ସୀର ରୂପ ବନ୍ୟାଜଳପରି ବଢ଼ିବାକୁ ଲାଗିଲା । ଯୌବନର ସ୍ରୋତ ମଧ୍ୟ ବନ୍ୟାଠାରୁ କମ୍ ନଥିଲା । ସଂପର୍କିତ ପରିବାରମାନଂକ ଘରୁ ବାହାଘର ପାଇଁ ପ୍ରସ୍ତାବମାନ ଆସିବାକୁ ଲାଗିଲା; କିଂତୁ ଅଚ୍ଛୁତା ଯେତେବେଳେ ନିଜର ଝିଅ ମୁହଁକୁ ଅନାଉଥିଲା, ତା'ର ଆଖି ବୁଜି ହୋଇ ଯାଉଥିଲା । ସେ ଭାବୁଥିଲା, "ଏଇ ଝିଅ ପାଇଁ ମୁଁ କେଉଁଠାରୁ ଅବା ଏକ ଦେବଦୂତ ଖୋଜି ଆଣିବି । ତା'ର ଯୋଗ୍ୟ ବର କିଏ ବା ଅଛି, କାହିଁ ମୁଁ ତ କାହାରିକୁ ଦେଖିପାରୁନି······"

ଯେଉଁସବୁ ସଂପର୍କୀୟ ବ୍ୟକ୍ତିମାନେ ଅଚ୍ଛୁତାକୁ ମିନତି କରୁଥିଲେ, ସେମାନେ କହିବାକୁ ଲାଗିଲେ ଯେ, "ଅଚ୍ଛୁତାର ଝିଅ ଆକାଶରୁ ଓହ୍ଲାଇ ଆସିଛି; ତା' ଦୁଆରକୁ କୌଣସି ରାଜା ବରବେଶ ହୋଇ ଆସିବ ।"

ସସ୍‌ସୀର ରୂପର ପ୍ରଶଂସା ଚାରିଆଡ଼େ ବ୍ୟାପିଗଲା । ଚାଲିଘରର କଥା ଯାଇ ଧନୀ ମାନୀ ଲୋକଂକ କାନରେ ପଡ଼ିଲା । ଏପରିକି କେହି ଜଣେ ରାଜାଂକୁ ମଧ୍ୟ କହିଦେଲା, "ଅଚ୍ଛୁତା ଧୋବାର ଝିଅ ତ ରାଜମହଲରେ ଶୋଭା ପାଇବା କଥା ।"

ରାଜାଂକର ଡାକରା ଶୁଣି ଅଚ୍ଛୁତାର ହଂସା ଉଡ଼ିଗଲା : "ହେ ଗରିବର ଭଗବାନ୍! ନଈର ସ୍ରୋତ କେମିତି ଓଲଟା ବହିଲାଣି ?" ହେଲେ ରାଜାଂକର ଆଦେଶ; ଏଣୁ ଏଡ଼ାଇ-ଦେବାର ବାଟ ନଥିଲା ।

ଅଚ୍ଛୁତାର ସ୍ତ୍ରୀ ସସ୍‌ସୀ ଦେହରେ ତେଲ ହଳଦୀ ଲଗାଇ ତାକୁ ସ୍ନାନ କରାଇଲା । ତାକୁ ଲୁଗା ପିନ୍ଧାଇ ସାରି ତା'ର ମଂଗଳ ପାଇଁ ସାଇତିରଖିଥିବା ସୁନାର ପଦକଟିକୁ କାଢ଼ି ତା'ର ବେକରେ ଗଳାଇଦେଲା ।

ଝିଅକୁ ନେଇ ରାଜମହଲରେ ପହଂଚବାକ୍ଷଣି ସସ୍‌ସୀକୁ ଦେଖି ରାଜାଂକର ଆଖିପତା-ମାନ ସ୍ଥିର ହୋଇ ରହିଗଲା । ସେ ଭାବିବାକୁ ଲାଗିଲେ, "ଏପରି ରୂପ ଲାଭ କରିବାର ସୌଭାଗ୍ୟ କାହାକୁ ରାଜମହଲରେ ମଧ୍ୟ ମିଳେନାହିଁ । ଏଇ ଧୋବା ତାକୁ କେଉଁ ସ୍ୱର୍ଗରୁ ଗୋଟାଇ ଆଣିଲା······"

ପାଦତଳର ମାଟି ସତେ ଯେମିତି ମଖମଲ ଗାଲିଚା ଭଳି ନରମ ହୋଇ ଯାଇଥିଲା । ଉନ୍ମାଦିତ ହୃଦୟରେ ରାଜା ସସ୍‌ସୀର ହାତକୁ ଛୁଇଁବା ପାଇଁ ହାତ ବଢ଼ାଇଲେ । କିଂତୁ ସେ

ଯେମିତ ସସ୍‌ସୀର କାଂଧ ଆଡ଼କୁ ହାତ ବଢ଼ାଇଛଂତ, ସସ୍‌ସୀର ବେକରେ ଝୁଲୁଥିବା ପଦକ ଉପରେ ତାଂକର ଆଖି ପଡ଼ିଲା । ରାଜାଂକର ପାଦତଳେ ପୃଥିବୀ ଦୋହଲିବାକୁ ଲାଗିଲା······

ରାଜା ଅଂତଃପୁରରୁ ରାଣୀଂକୁ ଡକାଇଲେ ଓ ସସ୍‌ସୀର ବେକରେ ଥିବା ପଦକଟିକୁ ତାଂକୁ ଦେଖାଇଲେ।

"ହିଁଅ ······ହିଁଅ······" ରାଣୀଂକର ପାଟି ଖନ ମାରିଯାଉଥିଲା ।

ରାଜାଂକର ହୃଦୟକୁ କିଏ ଯେମିତ ବଦାଶ ଦେଉଥିଲା । କିଂତୁ ଏପରି ସୁଂଦର ରୂପ ଦେଖିବା ପରେ ମଧ ସେ ଏକଥା ସ୍ୱୀକାର କରିବାକୁ ଦୋଦୋପାଞ୍ଚ ହେଉଥିଲେ ଯେ ନଦୀରେ ଭସାଇ ଦେଇଥିବା ତାଂକର ହୃଦୟର ପିଣ୍ଡୁଳା ଏ ପର୍ଯ୍ୟଂତ ଜୀବତ ଅଛି !

ରାଣୀଂକୁ ଏସବୁ ଘଟଣା ବାସ୍ତବ ବୋଲି ପରତେ ହେଉନଥିଲା । କାଳେ ଏଇ ସବୁ ସ୍ୱପ୍ନ ଆଖି ଆଗରୁ ଅଦୃଶ୍ୟ ହୋଇଯିବ, ଏଇ ଭୟରେ ସେ ଆଖିପତା ମଧ ପକାଉ ନଥିଲେ ।

ରାଜା ଅତ୍ତା ଧୋବାକୁ ଡାକି ନିଜ ପାଖରେ ବସାଇଲେ ଓ ପ୍ରକୃତ ଘଟଣା ବର୍ଣ୍ଣନା କରିବା ପାଇଁ ଆଦେଶ ଦେଲେ ।

"ମହାରାଜ ! ସୁଲତାନ ! ମୋର ଶୂନ୍ୟ କୋଳକୁ ଭଗବାନ୍ ପୂର୍ଣ୍ଣ କରିଦେଇଥିଲେ । ମୋଟା ଖଂଜା ହୋଇଥିବା ସିଂଧୁକରେ ସେ ରେଶମର ପୁଟୁଲାପରି ଶୋଇଥିଲା ଓ ସିଂଧୁକଟି ନଈରେ ଭାସିଯାଉଥିଲା······" ଅତ୍ତା ଧୋବା ହାତ ଯୋଡ଼ି ସବୁଯାକ ସତ କଥା ଖୋଲି କହିଲା ଓ ରାଜାଂକ ପାଦକୁ ଜାବୁଡ଼ି ଧରିଲା—"ସେ ଜଳକନ୍ୟା ପରି ଜଳରୁ ଜାତ ହୋଇଥିଲା, ମହାରାଜ ! ଏହା ହେଉଛି ଉପରେ ଥିବା ଆଲ୍ଲା ଓ ତଳେ ଥିବା ମହାରାଜଂକ ଦୟାର ଫଳ । ନହେଲେ ମୋର ବା କ'ଣ ଏତେ ଭାଗ୍ୟ ଅଛି ଯେ ଏଇ ପରୀକନ୍ୟା ମୋର ଅଗଣାରେ ଖେଳଥାଆଂତା··· ।"

ରାଜା ଅତ୍ତା ଧୋବା ଆଗରେ ଶହେ ଏକଟି ସୁନା ମୋହର ଭେଟି ଚଢ଼ାଇଲା ପରି ଚଢ଼ାଇଲେ ଓ ପ୍ରାର୍ଥନା କଲାଭଳି ଅନୁନୟ କଲେ, "ଅତ୍ତା ! ଏହା ହେଉଛି ଭଗବାନଂକର ମହିମା । ଏବେ ତୁ ଯେଉଁ ଗାଁରେ ହାତ ରଖିବୁ, ସେଇ ଗାଁ ତୋତେ ମିଳିବ । ହେଲେ ଆମର ମହଲର ଜ୍ୟୋତ ଆମକୁ ଫେରାଇଦେ···"

ଓ ରାଣୀଂକର ହୃଦୟରେ ଆଶାର କଅଁଳିଆ ପତ୍ର ଅଂକୁର ଉଠିଲା । ସେ କହିଲେ,"ମୁଁ ତୋ'ର ଉପକାରର ଋଣ କେବେ ହେଲେ ଶୁଝିପାରିବ ନାହିଁ ଅତ୍ତା ! ହେଲେ ତୁ ମାଆର ଏଇ ଭାଗ୍ୟ ତାକୁ ଫେରାଇଦେ ।"

ଅତ୍ତାର ଓଠ ଥରିବାକୁ ଲାଗିଲା । ତା'ର ମୁହଁରୁ ଭାଷା ବାହାରୁ ନଥିଲା । ତା' ବଦଳରେ ସସ୍‌ସୀ କହିଲା—"ରାଣୀ ମା' ! ତୁମେ ଯେତେବେଳେ ମଧ ଆଜ୍ଞା ଦେଲେ ମୁଁ

ଆସି ପହଂଚିଯିବ । କିଂତୁ ମୋତେ ଯିଏ ମରଣମୁହଁରୁ ଉଦ୍ଧାର କରି ଆଶ୍ରୟ ଦେଇଥିଲା, ତା'ର ଘରର ଛାତ ତଳେ ରହିବାକୁ ଦିଅ ।"

ଏବଂ ମହଲର ରୋଷଣୀ ଧୋବାର ଅଗଣାରେ ଖେଳିବାକୁ ଲାଗିଲା । ପ୍ରଥମେ କେବଳ ଭଗବାନ ଜାଣିଥିଲେ; ଆସ୍ତେ ଆସ୍ତେ ସାରା ଦୁନିଆ ଦେଖିପାରିଲା ଯେ—ଜଳଧାରା ପରି ସ୍ୱଚ୍ଛଂଦ ସସୀ ଇଚ୍ଛାନୁଯାୟୀ ଅବାଧରେ ନଈକୂଳରେ ଖେଳିବୁଲୁଥିଲା ।

ରାଜା ସସୀ ପାଇଁ ଏକ ସ୍ୱତଂତ୍ର ଉଦ୍ୟାନ ନିର୍ମାଣ କଲେ । ସେଠାରେ ସସୀ ସଖୀମାନଂକ ଗହଣରେ ଦୋଳି ଝୁଲି ଗୀତ ଗାଉଥିଲା । ସୁଗଂଧିତ ପୁଷ୍ପପରି ସସୀର ଆତ୍ମା ମଧ୍ୟ ମହକିବାକୁ ଲାଗିଲା ।

ଏବେ ସସୀ ସମସ୍ତଂକର ପ୍ରିୟ ଥିଲା । ବିଦ୍ୱାନ୍ ଓ ଜ୍ଞାନୀ ଶିକ୍ଷକମାନଂକୁ ସସୀ ପାଇଁ ନିଯୁକ୍ତ କରାଗଲା ଓ ସେ ପଢ଼ାପଢ଼ି ଆଡ଼କୁ ମନଦେଲା । ରାତି ରାତି ଧରି ସେ ଦୀପର ଆଲୁଅ ଜାଳି ତା'ପାଖରେ ବସୁଥିଲା ଓ ନିଜର ଆତ୍ମାକୁ ଜ୍ଞାନାଲୋକରେ ଆଲୋକିତ କରୁଥିଲା ।

ଶୁଣାଗଲା ଯେ, ଗଜନୀର ଜଣେ ସୌଦାଗର ସହରରେ ଏକ ଉଦ୍ୟାନ ନିର୍ମାଣ କରାଇଛି ଓ ଉଦ୍ୟାନ ଭିତରେ ଥିବା ଅଟ୍ଟାଳିକାରେ ସେ ଏମିତି ଛବି ଲଗାଇଛି ଯେ ସେଭଳି ଛବି ନା' ଆଗରୁ କେହି ଦେଖିଛି ନା' କେହି ତା' ବିଷୟରେ ଶୁଣିଛି ।

ସସୀକୁ ଜ୍ଞାନ ଅର୍ଜନ କରିବାର ସଉକ୍ ଘାରିଥିଲା । ସଖୀମାନଂକୁ ସାଂଗରେ ନେଇ ସେ ଗଜନୀର ସୌଦାଗରର ବଗିଚାକୁ ଧାଇଁଗଲା । ସେଇଠି ଯାହା ଦେଖିଲା, ତା' ଦେଖି ତା'ର ମନ ଖୁସିରେ ନାଚିଉଠିଲା । ଅଟ୍ଟାଳିକାର କାଂଥମାନଂକର ଉଭୟପଟୁ ସୁଗଂଧ ଆସୁଥିଲା । ଗୋଟାଏ ପଟେ ଫୁଲମାନଂକର ବାସ୍ନା ଓ ଅନ୍ୟ ପଟେ ରଂଗର ମହକ । ବାହାରେ ଜଣେ ମାଲୀ ଗୁଚ୍ଛଗଛମାନ ମାଟିରେ ପୋତୁଥିଲା ଓ ଭିତରେ ଜଣେ ଶିଳ୍ପୀ ବିଭିନ୍ନ ରଂଗ ଦେଇ ଚିତ୍ର ଆଂକୁଥିଲା ।

ସସୀ ଚିତ୍ରମାନଂକୁ ଦେଖିଲା ଓ ସୌନ୍ଦର୍ଯ୍ୟ ଆଗରେ ମଥା ନତ କଲା । କିଂତୁ ଏଇ ଚିତ୍ରମାନଂକ ମଧ୍ୟରେ ଏଭଳି ଏକ ଚିତ୍ର ଥିଲା ଯା'କୁ ଦେଖିବାକ୍ଷଣି ତା'ର ପାଦମାନ ଅଚଳ ହୋଇଗଲା । ସେ ପଲକ ପକାଇବା ପାଇଁ ମଧ୍ୟ ଭୁଲିଗଲା । ସଖୀମାନେ ତା' ଦେହକୁ ହଲାଇଦେଇ ତା'ର ଧ୍ୟାନଭଂଗ କଲାପରେ ସେ ଭାବବିଭୋର ହୋଇ ଚିତ୍ରକର ଆଗରେ ହାତଯୋଡ଼ି କହିଲା—"ହେ ନିପୁଣ ଶିଳ୍ପୀ ! ତୁମେ କାହାର ଚେହେରାକୁ ଦେଖି ଏଇ ଚିତ୍ରଟି ଆଂକିଛ ?"

ଚିତ୍ରକାର ହସିପକାଇଲା—"ରୂପ ହେଉଛି ପ୍ରଭୁଂକର ସୃଷ୍ଟି; କିଂତୁ ମୁଁ ଏଇ ଚିତ୍ରଟି ଆଂକିଛି । ଏ ହେଉଛି କୀଚମର ରାଜା ଅଲୀହୋତର ପୁତ୍ର ରାଜକୁମାର ପୁନ୍ନୁ......"

"ପୁନ୍ନୁ···ପୁନ୍ନୁ···" ସସ୍‌ସୀର ପ୍ରତ୍ୟେକଟି ଲୋମକଣା ଯେମିତି ଏକସ୍ୱରରେ ଚିତ୍କାର କରିଉଠିଲେ "ପୁନ୍ନୁ···ପୁନ୍ନୁ···"

ଜ୍ଞାନଲାଭ ଓ ଜ୍ଞାନର ପରୀକ୍ଷା କରିବା ପାଇଁ ଆସିଥିବା ସସ୍‌ସୀ ନିଜ ଭାଗ୍ୟର ଦାର ବନ୍ଦ କରିଦେଇଥିଲା ।

ସଂପୂର୍ଣ୍ଣ ହୃଦୟର ମୂଲ୍ୟ ଦେଇ ସସ୍‌ସୀ ପୁନ୍ନୁର ଚିତ୍ରକୁ ନିଜ ଆଖିଭିତରେ ରଖିନେଲା ।

ଭଁବୋର ସହରରେ ଏମିତି କୌଣସି ରାଜକର୍ମଚାରୀ ନଥିଲା ଯିଏ ସସ୍‌ସୀର ଆଦେଶ ମାନୁ ନଥିଲା । ସବୁ ନଈଘାଟମାନଂକରେ କର୍ମଚାରୀମାନଂକୁ ନିଯୁକ୍ତ କରିଦିଆଗଲା— ସହରକୁ ଯେକୌଣସି ସୌଦାଗର ଆସୁଥିଲା ତାକୁ ପ୍ରଥମେ ସସ୍‌ସୀ ପାଖକୁ ଅଣାଯାଉଥିଲା ।

ସୌଦାଗରମାନଂକର ଜୀବନ ଓ ଧନରତ୍ନ ନିରାପଦ ରହିବ, କିଂତୁ ଅଲ୍ଲହୋତର ରାଜକୁମାର ପୁନ୍ନୁକୁ ଏଠାକୁ ନେଇ ନ ଆସିବାଯାଏ ସେମାନେ ନିଜ ଦେଶକୁ ଫେରି ପାରିବେ ନାହିଁ ।" ସସ୍‌ସୀ କିଚମ ଆଡ଼ୁ ବହିଆସୁଥିବା ପବନକୁ ପ୍ରଣାମ କଲା ଓ ଏଇ ଆଦେଶ ଶୁଣାଇଦେଲା । ଏଇ ଆଦେଶ ଶୁଣି ସୌଦାଗରମାନେ ଭୟଭୀତ ହୋଇପଡ଼ିଲେ । ସେମାନେ ଜଣେ ସୌଦାଗରକୁ ଦୂତ ରୂପରେ କିଚମ ଉଦ୍ଦେଶ୍ୟରେ ପଠାଇଦେଲେ । କିଚମର ରାଜା ଅଲ୍ଲହୋତ ଏକଥା ଶୁଣି କ୍ରୋଧାନ୍ୱିତ ହୋଇଉଠିଲେ ।

ଏଇ କ୍ରୋଧର କଥା ପୁନ୍ନୁ କାନରେ ପଡ଼ିଲା । ସେ ଦୂତକୁ ଏକାଂତରେ ଭେଟିଲା ଓ ତା'ଠାରୁ ସସ୍‌ସୀର ପ୍ରେମର ସଂବାଦ ଶୁଣିଲା ।

ସସ୍‌ସୀର ହୃଦୟରେ ଜଳୁଥିବା ନିଆଁର ଧାସ ପୁନ୍ନୁର ହୃଦୟକୁ ସ୍ପର୍ଶକଲା । ତା'ର ପ୍ରତ୍ୟେକ ଲୋମକଣା ଧୀରେ ଧୀରେ ସସ୍‌ସୀର ପ୍ରେମର ଉତ୍ତାପରେ ଜଳିବାକୁ ଲାଗିଲା ।

ପ୍ରଭାତ ସୂର୍ଯ୍ୟର ରକ୍ତିମ ଆଭାକୁ ଦେଖି ପୁନ୍ନୁର ମନେହେଉଥିଲା ଯେ ଆଜିର ଆକାଶରେ ସୂର୍ଯ୍ୟ ନୁହେଁ, ସସ୍‌ସୀର ପ୍ରେମ ଉଦୟ ହୋଇଛି ।

ଆକାଶ ଉପରକୁ ଉଠୁଥିବା ସୂର୍ଯ୍ୟକୁ ପୁନ୍ନୁ ପ୍ରଣାମକଲା ଓ ଅତର ଇତ୍ୟାଦିର ଗଣ୍ଠିଲି ବାଂଧି ସୌଦାଗର ବେଶରେ ନିଜ ପିତାଂକର ଅଜ୍ଞାତସାରରେ ଚୁପ୍‌ଚାପ୍ ଭଁବୋର ସହର ଆଡ଼କୁ ବାହାରିପଡ଼ିଲା ।

"କିଚମରୁ ସୌଦାଗର ଆସିଛଂତି ।" ଯେମିତି ପ୍ରହରୀମାନଂକର କଥା ସସ୍‌ସୀ କାନରେ ପଡ଼ିଛି, ସେ ବ୍ୟାକୁଳ ହୃଦୟରେ ଧାଇଁଗଲା । କିଚମର ସୌଦାଗରମାନେ ବିଭିନ୍ନ ବସ୍ତୁର ପସରା ମେଲାଇ ହାଟରେ ବସିଥାଆଂତି ।

ପୁନ୍ନୁ ମଧ୍ୟ ସୌଦାଗରମାନଂକ ମେଳରେ ଜଣେ ସୌଦାଗର ପରି ବସିଥାଏ । ସସ୍‌ସୀ

ତାକୁ ଚହ୍ନି ପାରିଲାନି । କିନ୍ତୁ ସସ୍‌ସୀର ସୌନ୍ଦର୍ଯ୍ୟ ଦେଖି ପୁନ୍ନୁର ମନେହେଲା—ସେ ଯେଉଁ ସୂର୍ଯ୍ୟ ଉଦ୍ଦେଶ୍ୟରେ ଆକାଶକୁ ପ୍ରଣାମ କରିଥିଲା, ସେହି ସୂର୍ଯ୍ୟ ପୃଥିବୀବକ୍ଷକୁ ଓହ୍ଲାଇ-ଆସିଛି !

ପୁନ୍ନୁ ଅତରରେ ବୁଡ଼ାହୋଇଥିବା ଭୂଳାଟିକୁ ଆଲ୍ଲାଙ୍କର ପ୍ରାର୍ଥନାଗୃହରେ ଚଢ଼ାଉଥିବା ଭଙ୍ଗୀରେ ସସ୍‌ସୀର ପଣତରେ ଛୁଆଁଇଦେଲା ।

"ହେ ଭଗବାନ୍ !" ସସ୍‌ସୀର ଆଖିରେ ବିଜୁଳି ଖେଳିଗଲା । କିନ୍ତୁ ସେ ଥରଥର ସ୍ୱରରେ ପଚାରିଲା, "ସୌଦାଗର ! ତୁ ବହୁତ ଭାଗ୍ୟଶାଳୀ ରାଜ୍ୟରୁ ଆସିଛୁ । ସତ କହ, ତୁ କ'ଣ କେବେ ମୋର ପୁନ୍ନୁକୁ ଦେଖିଛୁ ?"

"ହଁ ?" ପୁନ୍ନୁ ସଂଭ୍ରମତା ସହ ମଥା ନତକଲା । ତା'ପରେ ସେ ମୁହଁ ଉଠାଇ ସସ୍‌ସୀର ଆଖିରେ ନିଜର ଦୃଷ୍ଟି ନିବଦ୍ଧ କରି କହିଲା, "ପରୀକନ୍ୟା ! ପ୍ରକୃତ ପୁନ୍ନୁକୁ ମୁଁ ଆଜିମାତ୍ର ଦେଖିବାକୁ ପାଇଲି—ତୋ'ର ଆଖିରେ ।"

ଉଭୟଙ୍କର ମଥା ପରସ୍ପର ପ୍ରତି ସମ୍ମାନରେ ନଇଁଗଲା ।

ଏପଟେ ପୁନ୍ନୁର ଭାଇମାନେ କ୍ରୋଧାନ୍ୱିତ ହୋଇ ଓଟରେ ଚଢ଼ି ପୁନ୍ନୁ ପଛେ ପଛେ ଭଁବୋର ସହରରେ ପହଁଚିଗଲେ । ସେମାନେ ଦେଖିଲେ ସହର ସାରା ଶ୍ରେଣୀ ଜଳାଲପରି ଆଲୋକିତ ହୋଇଯାଇଛି । ପଚାରି ପଚାରି ସେମାନେ ସସ୍‌ସୀର ବଗିଚାରେ ପହଁଚିଗଲେ । ସେଇଠି ପୁନ୍ନୁ ରହିଥିଲା । ଫୁଲଭରା ଉଦ୍ୟାନରେ ସସ୍‌ସୀର ସଖୀମାନେ କପୋତୀ ଓ ବୁଲ୍‌ବୁଲ୍ ପକ୍ଷୀପରି ଖୁସିରେ ଏପଟ ସେପଟ ହେଉଥିଲେ ।

ପୁନ୍ନୁର ଭାଇମାନେ ନିଜ ନିଜ ଭିତରେ ପରାମର୍ଶ କଲେ । ଓଟମାନଙ୍କୁ ବାହାରେ ବାନ୍ଧିଦେଇ ସେମାନେ ଭିତରକୁ ଗଲେ ଏବଂ ପୁନ୍ନୁ ଓ ସସ୍‌ସୀକୁ ନିଜର ଶ୍ରଦ୍ଧା ଜ୍ଞାପନ କଲେ । ମଧୁର ଭାଷାରେ ସେମାନେ କହିଲେ—"ଆମେ ଆମ ଭାଇ ସହିତ ଆନନ୍ଦ-ଉତ୍ସବରେ ଯୋଗଦେବାକୁ ଆସିଛୁ ।"

"ମୁଁ ବହୁତ ଆନନ୍ଦିତ ହେଲି । ଆପଣଙ୍କୁ ମୁଁ ସ୍ୱାଗତ କରୁଛି ।" ସସ୍‌ସୀ କହିଲା ଓ ତାଙ୍କ ପାଇଁ ବିଭିନ୍ନ ପ୍ରକାରର ଖାଦ୍ୟଦ୍ରବ୍ୟର ବ୍ୟବସ୍ଥା କଲା ।

ସନ୍ଧ୍ୟା ହେଲା ପରେ ପୁନ୍ନୁର ଭାଇମାନେ ମଦିରାପାତ୍ରମାନ କାଢ଼ିଲେ, "ବିବାହ ପୂର୍ବରୁ ଆମେ ଚଉଦିନରାତି ଜାକଜମକରେ ଆନନ୍ଦ ଉତ୍ସବ ପାଳନ କରିବା ।"

ସସ୍‌ସୀର ସଖୀମାନେ ମେହେନ୍ଦୀ ଆଣିଲେ, ଫୁଲର ସୁଗନ୍ଧ ତାଳ ତେଲ ହଳଦୀ ତିଆରି କଲେ ଓ ସସ୍‌ସୀକୁ ରେଶମର ଲୁଗା ପିନ୍ଧେଇ ଢୋଲକ ବଜାଇବାକୁ ଲାଗିଲେ ।

ରାଜମହଲରୁ ରାଣୀମା' ଥାଳରେ ମୋତି ଭର୍ତ୍ତି କରି ପଠାଇଦେଲେ ଓ ଅଡ଼ୁତା କାଜୁ, କିସ୍‌ମିସ୍, ଖଜୁରି ପ୍ରଭୃତିର ଝୁଡ଼ି ନେଇ ବେଲୁଚିସ୍ଥାନରୁ ଆସିଥିବା ଅତିଥିମାନଙ୍କର ସତ୍କାର କଲା ।

ଅଡ଼ୁତାର ସମସ୍ତ ଆତ୍ମୀୟସ୍ୱଜନ ନଦୀଘାଟରେ ଦୀପ ଜଳେଇ ଭଗବାନଙ୍କ ଉଦ୍ଦେଶ୍ୟରେ

ଶିରଣିର ପ୍ରସାଦ ଚଢ଼େଇଲେ ।

ଏହା ପୁଣ୍ୟ ଅର୍ଜନର ସମୟ ଥିଲା; କିନ୍ତୁ ପୁନ୍ନୁର ଭାଇମାନେ ପାପ ଅର୍ଜନ କରିବାପାଇଁ ଆଗ୍ରହୀ ଥିଲେ । ପୁନ୍ନୁ ଶେଷଥର ପାଇଁ ମଦିରା ପାନ କଲା ସମୟରେ ତା'ର ମଦିରାପାତ୍ରରେ ସେମାନେ ଔଷଧ ଢାଳିଦେଲେ । ପରମ୍ପରା ଅନୁଯାୟୀ ମଦିରାର ଶେଷପାତ୍ର ପିଇବା ସ୍ୱାଭାବିକ ପ୍ରଥା ଥିଲା । ଏଣୁ ପୁନ୍ନୁ ମନରେ କିଛିହେଲେ ସନ୍ଦେହ ହେଲା ନାହିଁ । କିନ୍ତୁ ମଦପାତ୍ର ଖାଲି ହେବା ସଙ୍ଗେ ସଙ୍ଗେ ପୁନ୍ନୁ ନିଦରେ ଘାରି ହୋଇଗଲା ।

ସସ୍‌ସୀ ନିଜ ପାଇଁ ହୋଇଥିବା ଚାନ୍ଦୁଆ ତଳେ ସଖୀମାନଙ୍କ ସହିତ ଶୋଇପଡ଼ିଲା । ପୁନ୍ନୁ ଭାଇମାନଙ୍କ ସହିତ ତା' ନିଜର ଚାନ୍ଦୁଆ ତଳେ ଶୋଇଲା ।

ସକାଳୁ ସସ୍‌ସୀ ନିଦରୁ ଉଠିଲାବେଳକୁ ରାତିର ଅନ୍ଧକାର ସୂର୍ଯ୍ୟ ସାମ୍ନାରେ ମଳିନ ପଡ଼ି-ଆସୁଥିଲା । ସସ୍‌ସୀ ଆଗରେ ପୁନ୍ନୁର ଚାନ୍ଦୁଆ ପରିତ୍ୟକ୍ତ ଚିନ୍ତା ଥଳିଟିଏ ପରି ପଡ଼ିଥିଲା । ରାତି ଅଧରେ ପୁନ୍ନୁର ଭାଇମାନେ ପୁନ୍ନୁକୁ ଅଚେତ ଅବସ୍ଥାରେ ଓଟ ଉପରେ ଶୁଆଇଦେଇ କୀଚମ ଉଦ୍ଦେଶ୍ୟରେ ବାହାରିଯାଇଥିଲେ ।

ଫୁଲମାନଙ୍କର ସୁଗନ୍ଧ ସସ୍‌ସୀର ଓଠ ପାଇଁ ବିଷ ପାଲଟିଗଲା । ପୁନ୍ନୁର ଓଟ ପୁନ୍ନୁକୁ ତା' ପାଖରୁ ଛଡ଼ାଇ ନେଇ ଯେଉଁ ଆଡ଼କୁ ଚାଲିଯାଇଥିଲା, ସସ୍‌ସୀ ସେଇ ମରୁଭୂମି ଆଡ଼କୁ ପାଗଳୀପରି ହାତ ବଢ଼ାଇଲା ।

ସସ୍‌ସୀର ସଖୀମାନେ ମଧ୍ୟ କାନ୍ଦି କାନ୍ଦି ସସ୍‌ସୀର ପଛେ ପଛେ ଧାଇଁଲେ, କିନ୍ତୁ କିଛି ସମୟ ପରେ ସେମାନେ ଥକିଯାଇ ଅଣନିଃଶ୍ୱାସୀ ହୋଇପଡ଼ିଲେ । ସସ୍‌ସୀ ଓଟମାନଙ୍କର ପାଦଚିହ୍ନ ଅନୁସରଣ କରି ଖାଲିପାଦରେ ଅନେକ ଦୂରକୁ ଚାଲିଯାଇସାରିଥିଲା ।

"ପୁନ୍ନୁ......ପୁନ୍ନୁ......" ସସ୍‌ସୀର କାତର ଧ୍ୱନି ମରୁଭୂମିର ବାଲିସ୍ତୂପ ଭଳି ଉପରକୁ ଉଠିଯାଇ ପୁଣି ତଳକୁ ଖସିଯାଉଥିଲା ।

ସସ୍‌ସୀର ପାଦରେ ବୋଳିଥିବା ମେହେନ୍ଦିର ରଙ୍ଗ ରକ୍ତପରି ଲାଲ ପାଲଟିଗଲା । ମୁଣ୍ଡ ଉପରେ ପ୍ରଖର ସୂର୍ଯ୍ୟ ତା'ର ପ୍ରେମଭଳି ଦପ୍‌ଦପ୍ ହୋଇ ଜଳୁଥାଏ—ସେ ଆପାଦମସ୍ତକ ନିଆଁ ଶିଖା ପରି ଜଳି ଜଳି ମରୁଭୂମିରେ ଧାଉଁଥାଏ ।

ରାଣୀମା' ପଠାଇଦେଇଥିବା ମୋତିହାରଟି ତା' ବେକରେ ଥିଲା । ମୁକୁଳା ବାଳରେ ଲାଗିଯାଇ କେଜାଣି କେତେବେଳେ ହାରଟି ଛିଣ୍ଡିଗଲା । ଛମ୍‌ଛମ୍ ହୋଇ ମୋତିଗୁଡ଼ିକ ବାଲିରେ ପଡ଼ିବାକୁ ଲାଗିଲା । ଏହା ଦେଖି ସସ୍‌ସୀ ନିଜ ଜୀବନରେ ଘଟିଥିବା ସେଇ ମୁହୂର୍ତ୍ତକୁ ମନେପକାଇଲା; ଯେଉଁ ସମୟରେ ତା'ର ଜନ୍ମହେଲା ପରେ ତା'ର ଝୁଲଣ ପାଇଁ ରାଣୀମା' ମୋତିର ମାଳ ଗୁନ୍ଥୁଥିଲେ ଓ ସୂତା ଛିଣ୍ଡିଯାଇଥିଲା ।......

ସସ୍‌ସୀ ରାଣୀମାଙ୍କଠାରୁ ଶୁଣିଥିବା ଘଟଣାଟି ସ୍ମରଣ କରି ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଲା—"ମୋର ଭାଗ୍ୟକୁ ମା' ସେତେବେଳୁ ଚିହ୍ନି ସାରିଥିଲେ......"

ପାଦତଳର ଫୋଟକାଗୁଡ଼ିକର ଦରଜରେ ଜର୍ଜରିତ ହୋଇ ସେ ବାଲିରେ ବନ୍ଦୀ ହୋଇ ପଡ଼ିଥିବା ମୋତିଗୁଡ଼ିକୁ ଦେଖିଲା ଓ ତା'ପରେ ପୁଣି ଓଟଗୁଡ଼ିକର ପାଦଚିହ୍ନ ଖୋଜିବାକୁ ଲାଗିଲା ।

ମରୁଭୂମିର ବାଲି ସସ୍‌ସୀର ଚିନ୍ତା ଭଳି ଅନନ୍ତ ଥିଲା ।

"ମୁଁ ଜଳ ଓ ସ୍ଥଳର ପୁଞ୍ଜି ।" ବେଦନାକୁ ସହ୍ୟ କରି ନପାରି ସସ୍‌ସୀ ନିଜର ହୃଦୟକୁ ବୁଝେଇଲା, "ଅଗାଧ ଜଳରାଶି ଅନ୍ୟ କାହାର ଜମାଦେଲା ଧନ ପରି ମୋତେ ହାତରେ ଟେକି ରଖିଥିଲା । ଏବେ ଏଇ ମରୁଭୂମି ମଧ୍ୟ ମୋର ପ୍ରେମର ବିଶ୍ୱାସରେ ଗ୍ରୁଡ଼ିଆସିଥିବା ବସ୍ତୁ ଭଳି ମୋର ଯତ୍ନ ନେବ..."

ସସ୍‌ସୀ ଗୁରୁ ଓ ଜ୍ଞାନୀଲୋକଙ୍କଠାରୁ ଶୁଣିଥିଲା ଯେ, କୁକୁନୁସ ପକ୍ଷୀ ଗୀତ ଗାଇଲାବେଳେ ତା' ପରରେ ନିଆଁ ଲାଗିଯାଏ । ସେ ଯେତେ ବେଶି ଗାଏ, ନିଆଁର ଶିଖା ସେତିକି ଜୋର୍‌ରେ ଜଳିଉଠେ ଓ ଶେଷରେ ସେ ନିଜ ଡେଣାର ନିଆଁରେ ଭସ୍ମୀଭୂତ ହୋଇଯାଏ ।

ସସ୍‌ସୀର ମନେହେଲା ତା'ର ସମସ୍ତ ଅଙ୍ଗପ୍ରତ୍ୟଙ୍ଗରୁ ଲେଲିହାନ ନିଆଁ ଶିଖା ବାହାରୁଛି । ସେ ଅଦ୍ଭୁତ ଉଚ୍ଚସ୍ୱରରେ ପାଟିକଲା, "ପୁନ୍ନୁ...! ପୁନ୍ନୁ...!..."

ଓ ତା'ର ଶରୀରର ନିଜର ଉତ୍ତାପରେ ଜଳିବାକୁ ଲାଗିଲା—

ପାଖରେ ଥିବା ବାଲିସ୍ତୂପର ଉହାଡ଼ରେ ବାଳକଟିଏ ମେଣ୍ଢା ଚରାଉଥିଲା । ସେ ସସ୍‌ସୀର ବେଦନାମୟ ସ୍ୱର ଶୁଣିପାରିଲା । ଉତ୍ତପ୍ତ ଲୁ' ମାଡ଼କୁ ଖାତିର ନକରି ସେ ବାଲିଗଦାର ଆରପଟକୁ ଦୌଡ଼ିଆସିଲା । ସେ ଦେଖିଲା ଯେ ଜଣେ ଲଗା ଓଢ଼ଣୀଟି ଶବ ଉପରେ ଘୋଡ଼ା ହୋଇଥିବା କନାପରି ମରୁଭୂମିରେ ପଡ଼ିଛି ।

"ହେ ଭଗବାନ୍ !" ଗୁରଣକାଷ୍ଠ ବାଳକଟି ଓଢ଼ଣୀଟିକୁ ଉଠାଇ ଦେଖିଲା ଯେ ସସ୍‌ସୀ ଅଚେତ ହୋଇ ପଡ଼ିରହିଛି ।

ବାଳକଟି ମେଣ୍ଢା ଉପରେ ଲଦା ହୋଇଥିବା ଚମଡ଼ା ଥଳିରୁ ପାଣି ଢାଳି ସସ୍‌ସୀର ମୁହଁ ଉପରେ ଛିଞ୍ଚିଲା ।

ସସ୍‌ସୀ ନିଜର ସଞ୍ଜ୍ଞା ଫେରିପାଇଲା । କିନ୍ତୁ ମୁହୂର୍ତ୍ତକ ପାଇଁ । "...ପୁନ୍ନୁ !..." ପାଣିଧାର ଭଳି ସେ ପୁନ୍ନୁର ନାମରୁ ଢୋକେ ପିଇଲା ଓ ଶେଷ ନିଃଶ୍ୱାସ ତ୍ୟାଗ କଲା ।

ଗୁରଣକାଷ୍ଠ ବାଳକଟି ଅନେକ ସମୟ ଧରି ତା' ସାମ୍ନାରେ କାଠଭଳି ବସିରହିଲା । ଶେଷରେ ଅସ୍ତମାନ ସୂର୍ଯ୍ୟ ସହିତ ବାଲିରେ ସସ୍‌ସୀ ପାଇଁ କବର ତିଆରି କଲା ।

ଗୁରଣକାଷ୍ଠ ବାଳକର ଭରା ଯୌବନ ଯେମିତି ବୈରାଗ୍ୟ ପାଲଟିଗଲା । ତା'ର ମନ ହେଉଥିଲା ଯେ ଏଇ ପରୀକନ୍ୟା ପାଖରେ ସେ ଚିରଦିନ କବରର ଦୀପ ଭଳି ଜଳୁଥିବ—

ସନ୍ଧ୍ୟାର ଅନ୍ଧକାର ଗାଢ଼ ହୋଇ ଆସିବା ସମୟରେ ଜଣେ ବ୍ୟକ୍ତି ଓଟ ଉପରେ ବସି ତା' ପାଖ ଦେଇ ଗ୍ରୁଲିଗଲା । ତାକୁ ମରୁଭୂମିରେ ଏକାକୀ ବସିଥିବାର ଦେଖି କ୍ଷଣକ ପାଇଁ

ସ୍ଥିର ହେଲା । ସେ ପଚାରିଲା, "ପାଖରେ କେଉଁଠି ପାଣି ମିଳିବ କି ?"

ବାଳକଟି ଯେଉଁ ପାତ୍ରରେ ସସ୍ପୀକୁ ପାଣି ଢୋକ ଦେଇଥିଲା, ସେଇ ପାତ୍ରଟି ତା' ଆଗରେ ରଖିଦେଲା ।

ଓଟରେ ବସିଥିବା ବ୍ୟକ୍ତି ସେଇ ପାତ୍ରରୁ ପାଣି ପିଇସାରିବା ପରେ ବିସ୍ମିତ ହୋଇ ପଚାରିଲା—"ଏଇ ନିର୍ଜନ ମରୁଭୂମିରେ ତୁ ଏକାକୀ କାହିଁକି ବସିରହିଛୁ ଭାଇ ?"

ବାଳକଟି ହାତ ଉଠାଇ କବର ଆଡ଼କୁ ଇଂଗିତ କରି କହିଲା—"ମୋର ମନ ଏଇ ସଂସାରରୁ ତୁଟିଯାଇଛି । ଆଜି ମୁଁ ଏଇଠି ଜଣେ ପରୀକନ୍ୟା ପରି ସୁନ୍ଦର ମୁହଁ ଦେଖିଛି···!"

"ସେ କିଏ ?" ଓଟ ଉପରେ ଥିବା ବ୍ୟକ୍ତିର ହାତରେ ଥିବା ପାଣିପାତ୍ରଟି ଥରଉଠିଲା ।

"କେଜାଣି ସେ କିଏ ଥିଲା; ପୁନ୍ନୁ···ପୁନ୍ନୁ କହି ପ୍ରାଣ ଛାଡ଼ିଦେଲା··"

ଓଟସବାର ନିଜର ଥରଉଠୁଥିବା ହାତଟିକୁ ଚାରଣବାଳୀ ବାଳକର କାଂଧ ଉପରେ ରଖିଲା : "ତା'ହେଲେ ଭାଇ ! ତୁ ଆଉ ଗୋଟାଏ ଉପକାର କରିଦେ ! ଏଇ କବରକୁ ଖୋଲି ଆଉ ଟିକିଏ ବଡ଼ କରିଦେ !"

ବାଳକଟି କାବା ହୋଇ ଓଟସବାରର ମୁହଁକୁ ଚାହିଁରହିଲା । କିଂତୁ ଓଟରେ ଆସିଥିବା ବ୍ୟକ୍ତି ପାଖରେ ଯେମିତି କିଛି କହିବା ବା ଶୁଣିବା ପାଇଁ ସମୟ ନଥିଲା । ସେ ନିଜେ କବର ଉପରୁ ବାଲି କାଢ଼ୁଥିଲା ।

କବରକୁ ଖୋଲିସାରିବା ପରେ ସେ ସସ୍ପୀର ନିଷ୍ପଂଦ ଶରୀରକୁ ପ୍ରଣାମ କଲା । ତା'ପରେ ନିଜର ପୋଷାକକୁ କାଢ଼ିଦେଇ ସସ୍ପୀର ପାଦ ଉପରେ ରଖିଦେଲା······"ମୋ ଭାଇମାନେ ମୋ ସହିତ କପଟ କରିଥିଲେ ସସ୍ପୀ ! ମୋର ଚେତା ଫେରିଆସିବା ପରେ ମୋର ବିଶ୍ୱାସ ରକ୍ଷା କରିବା ପାଇଁ ଫେରିଆସିଛି··· ··"

ଏବଂ ପୁନ୍ନୁ, ଯେଉଁ ତରବାରି ବଳରେ ନିଜ ଭାଇମାନଙ୍କ ସହିତ ଯୁଦ୍ଧ କରି ଫେରିଆସି ପାରିଥିଲା, ସେଇ ତରବାରିଟିକୁ ନିଜ ଛାତିରେ ଭୁଷିଦେଲା ଓ ସସ୍ପୀର କବର ଉପରେ ଟଳିପଡ଼ିଲା ।

ଚାରଣବାଳୀ ବାଳକଟି ସ୍ତବ୍ଧ ହୋଇ ଦେଖୁଥିଲା—କବର ଉପରେ ବାଲି ପକାଇ ପୋତିଲା ସମୟରେ ସେ କବରର ଦୀପଶିଖା ଭଳି ଥରଉଠିଲା···

---

## କର୍ତାର ସିଂହ ଦୁଗ୍‌ଗଲ

# ସୋହ୍ନୀ ମହୀବାଲ୍

ପଂଜାବକୁ ପାଂଚଟି ନଦୀର ଦେଶ ବୋଲି କୁହାଯାଏ—ଏଇ ନଦୀଗୁଡ଼ିକ ହେଲେ ଝେଲମ, ଚେନାବ, ରାବି, ବ୍ୟାସ ଓ ଶତଲେଜ । ୧୯୪୭ରେ ଦେଶର ବିଭାଜନ ସମୟରେ ତିନୋଟି ନଦୀ ସୀମା ଆରପଟେ ରହିଗଲା; ଦୁଇଟି ନଦୀ—ବ୍ୟାସ ଓ ଶତଲେଜ—ଆମ ଭାଗରେ ପଡ଼ିଲା । ତିନୋଟି ନଦୀ ଥିବା ତାଂକ ଭାଗର ଅଂଚଳକୁ ମଧ୍ୟ ପାକିସ୍ଥାନର ଲୋକେ ପଂଜାବ ବୋଲି କହନ୍ତି ଓ ଦୁଇଟି ନଦୀ ଥିବା ଆମ ଭାଗକୁ ମଧ୍ୟ ଆମେ ଭାରତବାସୀ ପଂଜାବ ବୋଲି କହିଥାଉ । ବୋଧହୁଏ ଏପର୍ଯ୍ୟନ୍ତ ଆମର ଆଶା ଅଛି ଯେ, କାଲେ କେଉଁଦିନ ଅବା ଏଇ କୃତ୍ରିମ ରେଖା ସ୍ଲେଟ ଉପରେ ଲେଖା ହୋଇଥିବା ଅଂକମାନଂକ ପରି ଲିଭିଯିବ ଓ ପୂର୍ଣ୍ଣାଂଗ ପଂଜାବ ରୁମ୍‌...ଝୁମ୍‌...ଶବ୍ଦ କରି ଏଇ ଅଂଧକାର ଭିତରୁ ବାହାରି-ଆସିବ ।

ପଂଜାବର ନଦୀମାନଂକ ମଧ୍ୟରେ ସବୁବେଳେ ଚେନାବର ଅଧିକ ଚର୍ଚ୍ଚା ହୋଇ ଆସୁଛି । ବିଶେଷତଃ, ପଂଜାବର ଲୋକସାହିତ୍ୟରେ ଏଇ କଥା ଦେଖିବାକୁ ମିଳେ । ଲୋକଗୀତ, କଥା ଓ କାହାଣୀମାନଂକରେ ଚେନାବକୁ 'ଝନାଁ' ନାମରେ ନାମିତ କରାହୋଇଥାଏ । ଆଉ ମଧ୍ୟ ଲୋକଂକ ମନରେ ଏଭଳି ବିଶ୍ୱାସ ଜମାଟ ବାଂଧି ରହିଛି ଯେ, ଚେନାବର ପାଣି ନିଜର ପ୍ରଭାବ ବଳରେ କାହାକୁ ରଖେଇ-ଥୋଇ ଦିଏନାହିଁ। ତା'ର ପ୍ରଭାବରେ ଲୋକର ଅବସ୍ଥା ଏମିତି ହୋଇପଡ଼େ ଯେ ସେ କୌଣସିଠାରେ ମଧ୍ୟ ଶାଂତିରେ ରହିପାରେ ନାହିଁ । ଏଇ ଝନାଁ ନଦୀକୂଳରେ କବି ଦାମୋଦରଂକ ଆଖିଆଗରେ ହୀର ଓ ରାନ୍‌ଝାର ବିୟୋଗାଂତକ ନାଟକ ମଂଚସ୍ଥ ହୋଇଥିଲା । ଏଇ ଝନାଁ ନଦୀକୂଳରେ ମିର୍‌ଜା ଓ ସାହିବାଁ ପ୍ରେମର ସୁଉଚ୍ଚ ଶିଖରକୁ ଉଠିଯାଇଥିଲେ ଓ ପ୍ରେମର ଦୋଳିଉପରୁ କଚାଡ଼ି ହୋଇ ତଳେ ପଡ଼ିଥିଲେ । ଏଇ ଝନାଁର ପାଣିରେ ସୋହନୀ ଓ ମହୀବାଲର କାହାଣୀ ରକ୍ତର ଅକ୍ଷରରେ ଲେଖାଯାଇଥିଲା ।

ଏ ସେଇ ସମୟର କଥା; ଯେତେବେଳେ ସାରା ପୃଥିବୀର ଆଖିରେ ଭାରତର ମାଟି

ସ୍ୱର୍ଣ୍ଣପ୍ରସୂ ଥିଲା । ସମସ୍ତେ ଭାରତକୁ ଏକ ସୁନାପକ୍ଷୀ ବୋଲି ଭାବୁଥିଲେ । ଦେଶ-ଦେଶାଂତରରୁ ସୌଦାଗରମାନେ ନାନାପ୍ରକାରର ଜିନିଷ ବୋହିଆଣୁଥିଲେ ଓ ଏଠାରୁ ଅନେକ ପ୍ରକାରର ଭାରତୀୟ ଦ୍ରବ୍ୟ ବୋଝେଇ ନେଇ ଫେରୁଥିଲେ । ଏଇ କାହାଣୀର ସୂତ୍ରପାତ ଆରବୀୟ ଘୋଡ଼ା ବେପାର କରୁଥିବା ବୁଖାରାର ଜଣେ ସୌଦାଗର ପାଖରୁ ଘଟିଥିଲା । ସେଥର ବ୍ୟବସାୟରେ ଆସିବାବେଳେ ଇଜ୍ଜତବେଗ ନାମକ ଜଣେ ଧନିକପୁତ୍ର ମଧ୍ୟ ତା' ସାଂଗରେ ଆସିଥିଲା । ଇଜ୍ଜତବେଗ ଘୋଡ଼ା ପାଇଁ ପାଗଳ ଥିଲା ।

ଘୋଡା ଉପରେ ଚଢ଼ି ସେ ନାନାପ୍ରକାରର ଖେଳ ଦେଖାଉଥିଲା । ଘୋଡ଼ା ଉପରେ ତା'ର ବିଭିନ୍ନ କୌଶଳ ଦେଖାଇ ସେ ଗ୍ରାହକମାନଂକୁ ବିସ୍ମିତ କରିଦେଉଥିଲା; ଫଳରେ ସୌଦାଗରର ଘୋଡ଼ାଗୁଡ଼ିକ ଦୁଇଗୁଣ ତିନିଗୁଣ ଅଧିକ ମୂଲ୍ୟରେ ବିକି ହେଉଥିଲା । ଘୋଡ଼ା ବିକୁ ବିକୁ ସେମାନେ ଗୁଜରାଟ ନାମକ ସହରରେ ପହଂଚିଲେ । ସେମାନଂକ ପାଖରେ କେବଳ ଘରକୁ ଫେରିଯିବାପାଇଁ ନିଜର ଘୋଡ଼ାତକ ରହିଯାଇଥିଲା । ସେମାନେ ଲାହୋର, ଦିଲ୍ଲୀ, ଆଗ୍ରା ଓ ଆହୁରି ଅନେକଗୁଡ଼ିଏ ସହର ଦେଇ ଆସିଥିଲେ । ମହଣ ମହଣ ଲବଂଗ, ଅଲେଇଚ, ପେସ୍ତା, କିସ୍‌ମିସ୍ ବିନିମୟ କରିସାରିଥିଲେ ।

ସେ ସମୟରେ ଗୁଜରାଟ ପ୍ରଦେଶ ମାଟିର ବାସନ ପାଇଁ ବିଖ୍ୟାତ ଥିଲା । ବିଶେଷକରି ତୁଲା ନାମକ ଜଣେ କାରିଗର ଖୁବ୍ ସୁନାମ ଅର୍ଜନ କରିଥିଲା । ସେ ତିଆରି କରିଥିବା ବାସନ ଦେଶ-ଦେଶାଂତରକୁ ଯାଉଥିଲା । ସେ ଏଭଳି ସୁନ୍ଦରେଇ ତିଆରି କରୁଥିଲା ଯେ ତା' ଭିତରେ ପାଣି ଥିଲେ ବାହାରୁ ଦେଖାଯାଉଥିଲା । ତା' ହାତତିଆରି ବାଟି, ଥାଳିଆ, ଫୁଲଦାନ, ଚଲମ ଓ ଅନ୍ୟାନ୍ୟ ବସ୍ତୁଗୁଡ଼ିକୁ ଯେତେ ଦେଖିଲେ ମଧ୍ୟ ଗ୍ରାହକର ମନ ତୃପ୍ତ ହେଉନଥିଲା । କେଜାଣି ସେ କେଉଁଠାରୁ ମାଟି ଆଣୁଥିଲା, କେମିତି ତାକୁ ଚକଟୁଥିଲା, କେମିତି ତାକୁ ଚକରେ ଢାଳୁଥିଲା । ସେ ନିଜର ସୂକ୍ଷ୍ମ କଳାର ରହସ୍ୟ ଅନ୍ୟ କାହାକୁ କହୁନଥିଲା । ତା'ର ବାସନଗୁଡ଼ିକ ଉପରେ ରଂଗ-ବେରଂଗ ଚିତ୍ରମାନ ଅତି ସୁଂଦର ଦିଶୁଥିଲା । ପୁରୁଷାନୁକ୍ରମେ ତା'ର ବଂଶରେ ଏଇ ବ୍ୟବସାୟ ଚାଲିଆସୁଥିଲା । ଏବେ ଲୋକମାନଂକ କହିବା ଅନୁସାରେ, ଯଦିଓ ବାକିସବୁ କାମ ତୁଲା କୁମ୍ଭାର ନିଜ ହାତରେ କରୁଥିଲା, ଚିତ୍ର ଆଂକିବା କାମ ତା' ଝିଅ ସୋହନୀ ଉପରେ ନ୍ୟସ୍ତ ଥିଲା । ସୋହନୀର ଆଂଗୁଠିଗୁଡ଼ିକ ଖୁବ୍ କୋମଳ ଓ ନରମ ଥିଲା । ତା'ର ରୂପର ଖ୍ୟାତି ମଧ୍ୟ ଚାରିଆଡ଼େ ବ୍ୟାପିଯାଇଥିଲା । ତା'ର ଜ୍ଞାନ ମଧ୍ୟ କମ୍ ନଥିଲା ।

ସେଦିନ ବୁଲୁବୁଲୁ ଇଜ୍ଜତବେଗ ମଧ୍ୟ ତୁଲାର ଅଗଣାରେ ପହଂଚିଯାଇଥିଲା । ଅଗଣା ତ ନୁହେଁ, ଯେମିତି ଗୋଟାଏ କାରଖାନା ଥିଲା । ଶହଶହ ଶ୍ରମିକ କାର୍ଯ୍ୟବ୍ୟସ୍ତ ଥିଲେ । ଅନେକ-ଗୁଡ଼ିଏ କୋଠରି ଓ ବାରଂଡାରେ ବାସନ ଭର୍ତ୍ତି ହୋଇଥିଲା । ତୁଲାର ସୂକ୍ଷ୍ମ କାରିଗରୀ କାମ ଦେଖି ଇଜ୍ଜତବେଗ କାବା ହୋଇ ଠିଆହୋଇଗଲା । ଗୋଟାକରୁ ବଳି ଗୋଟାଏ ସୁଂଦର ବାସନ । ଗୋଟାକରୁ ବଳି ଗୋଟାଏ ସୁଂଦର ଛବି । ରଂଗର ବର୍ଣ୍ଣାଳୀ ଦେଖି

ତା'ର ଆଖି ଶୀତଳ ହୋଇଗଲା । ବାହାରେ ନାହିଁନଥିବା ଗରମ ପଡ଼ୁଥିଲା ।

ତୁଲା ନିଜେ ବୃଖାରାର ବଣିକପୁତ୍ରକୁ ବୁଲାଇ ବୁଲାଇ ବାସନ ଦେଖାଉଥିଲା । ଗୋଟାକ ପରେ ଗୋଟାଏ ଥାକ, ଗୋଟାକ ପରେ ଗୋଟାଏ କୋଠରି । ବୁଲି ବୁଲି ସେମାନେ ଭିତରର କୋଠରିରେ ପହଂଚଗଲେ । ସେଇଠି ତୁଲା ସବୁଠାରୁ ଭଲ ଜିନିଷମାନ ରଖିଥିଲା । ସେଇସବୁ ଦାମିକା ଜିନିଷ କିଣିବା କେବଳ ଧନୀ ଲୋକଂକ ପକ୍ଷରେ ସଂଭବ ଥିଲା ।

ଇଜ୍ଜତବେଗ ସେଇ କୋଠରିରେ ପାଦ ନ ଦେଉଣୁ ତା'ର ଦୃଷ୍ଟି ସାମ୍ନା ପର୍ଦ୍ଦା ପଛ-ପଟେ ଝଟିଆରେ ବସିଥିବା ତୁଲାର ଝିଅ ଉପରେ ପଡ଼ିଲା । ସେ ଗୋଟାଏ ପିଆଲା ଦେହରେ ଛବି ଆଂକୁଥିଲା । ତାକୁ ଦେଖିବା କ୍ଷଣି ଇଜ୍ଜତବେଗ ଧରିଥିବା ଫୁଲଦାନଟି ତା' ହାତରୁ ଖସିଯାଇ ଚଟାଣରେ ପଡ଼ିଲା । ଫୁଲଦାନଟିର ଭାଂଗିବା ଶବ୍ଦ ଶୁଣି ସୋହନୀର ହୃଦସ୍ପନ୍ଦନ ମୁହୂର୍ତ୍ତେ ବଂଦହୋଇଗଲା । ସେ ହାତରେ ରଂଗତୁଳୀ ନେଇ ସେଇଭଳି ଅବସ୍ଥାରେ ଖୋଲା ମଥାରେଇ ପାଖ କୋଠରିକୁ ଧାଇଁଗଲା ।

ଆଗରେ ଇଜ୍ଜତବେଗ ଛିଡ଼ା ହୋଇଥିଲା । ଦୀର୍ଘକାୟ, ବଳିଷ୍ଠ ହସହସ ମୁହଁ । କାଂଧ ପର୍ଯ୍ୟଂନ୍ତ ଲମ୍ବା ଘନକୃଷ୍ଣ କେଶ । ଏଣେ ସୋହନୀ ଆକାଶରୁ ଓହ୍ଲାଇ ଆସିଥିବା ଅପ୍‌ସରା ପ୍ରାୟ ମନେ ହେଉଥିଲା । ଆଶଂକାରେ ତା'ର ମୁଖମଂଡଳ ଲାଲ ହୋଇଯାଇଥାଏ । ତରତର ହୋଇ ଆସିବା ଫଳରେ ତା'ର କପାଳ ଓ ମୁହଁ ଉପରେ ମୁଂଡର ବାଳ ବାଂଚେଇ ହୋଇ ପଡ଼ିଥାଏ । ଫ୍ରେମ୍‌ରେ ବଂଧା ହୋଇଥିବା ଛବି ଭଳି ସେ କବାଟ ପାଖରେ ଛିଡ଼ା ହୋଇଥିଲା ।

ଦୁଇ ତିନି ମିନିଟ୍ ଏଭଳି ଅବସ୍ଥାରେ ଅତିବାହିତ ହେଲାପରେ ତୁଲା କୁମ୍ଭାର ଗଲା ଖଂକାରି ଭଂଗା ଫୁଲଦାନର ଖଂଡମାନ ଗୋଟେଇବାକୁ ଲାଗିଲା ।

ସେଇଦିନ, ତା' ଆରଦିନ, ପୁଣି ତା' ପରଦିନ, ଏଭଳି ଭାବରେ ଇଜ୍ଜତବେଗ ନିୟମିତ ତୁଲାଘରକୁ ଆସିବାକୁ ଲାଗିଲା । ସେ ପ୍ରତିଦିନ କିଛି କିଛି ବାସନ ପସଂଦ କରି କିଣୁଥିଲା । ତୁଲାର ଅନେକଗୁଡ଼ିଏ ଥାକ ଖାଲି ହୋଇଗଲା ।

ଦିନକର କଥା । ବଣିକପୁତ୍ର ଯେତେବେଳେ ସେଠାକୁ ଆସିଲା ତୁଲା ଘରେ ନ ଥିଲା । କୌଣସି ଏକ ଶୋକସଂତପ୍ତ ଆତ୍ମୀୟ ଘରକୁ ସମବେଦନା ଜଣାଇବାପାଇଁ ବାହାରି ଯାଇ-ଥିଲା । ବାପ ଘରେ ନଥିଲା । ପରିଚିତ ଧନୀ ଗରାଖକୁ ସୋହନୀ ନିଜେ ବାସନ ଦେଖାଇବାକୁ ଲାଗିଲା । ଦ୍ୱିପହରଯାକ ଇଜ୍ଜତବେଗର ବାସନକିଣାରେ କଟିଗଲା । ଦ୍ୱିପହର ଯାଇ ସଂଜହେଲା । ତା'ପରେ କ'ଣ ହେଲା, କେମିତି ହେଲା କେଜାଣି, ବାସନ ବଛି କରୁ କରୁ ସୋହନୀ ନିଜେ ନିଜକୁ ହରାଇଦେଲା । ସୋହନୀର ମନେହେଲା ବିଦେଶୀର ସ୍ପର୍ଶରେ ଯେମିତି ବାସନମାନଂକରେ ରଂଗ ଭରିଯାଇଛି । ଏଭଳି ରଂଗ ସେ ଆଗରୁ କେବେ ଦେଖିନଥିଲା । ପ୍ରିୟତମର ସାମାନ୍ୟ ସ୍ପର୍ଶରେ ସୋହନୀର ବୈଠକଘର ଶୀତଳ ହୋଇଉଠିଲା । ବାହାରେ

ପ୍ରଚଂଡ ଗରମ; କିଂତୁ ଘର ଭିତରର ପରିବେଶ ଥଂଡା ହୋଇ ଯାଇଥିଲା । ଗୀନଖାର ସ୍ପର୍ଶରେ ସତେ ଯେମିତି ସୋହନୀର ଅଂତରରେ ଥିବା ସ୍ୱରର ଅଂଗପ୍ରତ୍ୟଂଗ ପୁଲକିତ ହୋଇଉଠିଲା । ବାତାବରଣରେ ସଂଗୀତର ମୂର୍ଚ୍ଛନା ଭରିଉଠିଲା ।

ଇଜ୍ଜତବେଗର ସହଯାତ୍ରୀ ସୌଦାଗରମାନେ ତାକୁ ନେଇ ବଡ ହଇରାଣରେ ପଡ଼ିଥିଲେ । ସେ ଯାହା କିଛି ଉପାର୍ଜନ କରିଥିଲା, ସବୁତକ ମାଟିବାସନ କିଣାରେ ଉଡ଼େଇ ସାରିଥିଲା । ଗଦା ଗଦା ବାସନ ଜମା ହୋଇପଡ଼ିଥିଲା । ଦୁଇ ଗୋଟିଏ ବାସନ ଥିଲେ ଅବା କେହି ହେଲେ ନିଅଂତା; କିଂତୁ ଶହ ଶହ ବାସନକୁ ଏତେ ଦୂରରେ ଥିବା ବୁଖାରା ପର୍ଯ୍ୟଂତ କିଏ ନେଇଯିବ ? ତା' ଉପରେ ପୁଣି ଇଜ୍ଜତବେଗ ସହର ଛାଡ଼ି ବାହାରକୁ ଯିବାର ନାଁ ଧରୁନଥିଲା । ଧର୍ମଶାଳାରେ ପଡ଼ି ପଡ଼ି ବାସନଗୁଡ଼ିକ ଉପରେ ଧୂଳିର ପରସ୍ତ ଜମିବାକୁ ଲାଗିଥିଲା । ଗୋଟାକ ଉପରେ ଗୋଟାଏ ରଖାହୋଇଥିବା ବାସନରୁ ଅନେକଗୁଡ଼ିଏ ବାସନ ଭାଂଗିସାରିଥିଲା । ଇଜ୍ଜତବେଗର ସାଥୀମାନେ ତା'ର ମତିଗତି କିଛି ବୁଝି ପାରୁନଥିଲେ ।

ଶେଷରେ ବିରକ୍ତ ହୋଇ ଦିନେ ସକାଳୁ ତା'ର ସହଯାତ୍ରୀ ବଣିକଦଳ ସହର ଛାଡ଼ି ବାହାରିଗଲେ । ଇଜ୍ଜତବେଗ ସହରରେ ରହିଗଲା ।

ଇଜ୍ଜତବେଗର ଏବେ ଅନ୍ୟ କୌଣସି କାମ ନଥିଲା । ସେ ଦିନସାରା ତୁଲାର ବାସନ କାରଖାନାରେ ଘୂରିବୁଲୁଥିଲା । କେତେବେଳେ ଚକ ପାଖରେ ତ, କେତେବେଳେ ଚୁଲି ପାଖରେ । ବେଳେବେଳେ ସେ ବାସନମାନଂକର ଦର କଷୁଥିଲା । ଥରେ ମାତ୍ର ସୋହନୀକୁ ଦର୍ଶନ କରିବାର ସୁଯୋଗ ମିଳିଗଲେ ତା'ର ମନେ ହେଉଥିଲା ଯେ ଦିନଟି ସଫଳ ହୋଇଛି ।

ସୋହନୀର ଅବସ୍ଥା ମଧ୍ୟ ତଦ୍ରୂପ ଥିଲା । ବିଦେଶୀର ଥରେ ମାତ୍ର ସ୍ପର୍ଶରେ ତା'ର ଯାହା କିଛି ଆପଣାର ଥିଲା ସବୁ ତା'ର ପର ମନେହେଉଥିଲା । ତା'ର ଖାଇବା-ପିଇବାରେ ଆଉ କିଛି ରୁଚି ନଥିଲା । ଦିନରାତି ଧରି ସେ କେବଳ ବାସନମାନଂକ ଉପରେ ଛବି ଆଂକୁଥିଲା । ସେ କେବଳ ଇଜ୍ଜତବେଗର ମନକୁ ପାଉଥିବା ଚିତ୍ରମାନ ଆଂକୁଥିଲା ଓ ସେଥିରେ ତା'ର ପ୍ରିୟତମର ପ୍ରିୟ ନୀଳରଂଗ ଭରୁଥିଲା ।

ତୁଲା ମନେ ମନେ ସବୁ କିଛି ବୁଝିପାରୁଥିଲେ ସୁଦ୍ଧା ମୁହଁ ଖୋଲି କିଛି କହୁନଥିଲା । ସେ ଭିତରେ ଭିତରେ ହାଂଡିର ତାତିଲା ପାଣି ପରି ଫୁଟୁଥିଲା । ତୁଲା ସୋହନୀର ହାତକୁ ଦ୍ୱିହାତ କରିବା ପାଇଁ ଅନେକ ଚେଷ୍ଟା କଲା; କିଂତୁ ଝିଅ ତା'ର ପାଲିରେ ପଡ଼ୁନଥିଲା । ଏକମାତ୍ର ଝିଅକୁ ଭଲ ସେ କେମିତି ଜଣେ ବିଦେଶୀ ହାତରେ ସମର୍ପି ଦିଅଂତା —ଏହା ଥିଲା ତା'ର ସମସ୍ୟା । ଇଜ୍ଜତବେଗ ସାଥୀ ବଣିକମାନେ ଚାଲିଯିବା ପରେ ଅନେକ ସପ୍ତାହ ଅତିବାହିତ ହୋଇସାରିଥିଲା । ଏବେ ଇଜ୍ଜତବେଗ ପାଖରେ ଆଉ କିଛି ନଥିଲା । ଛିଂଡା ମଇଳା ବସ୍ତ୍ର, ଅଖିଆ ଅପିଆ—ତା' ପାଖରେ ଅଧଲାଟିଏ ମଧ୍ୟ ରହିଯାଇ ନଥିଲା । କପର୍ଦ୍ଦକ-

ଶୂନ୍ୟ ଇଚ୍ଛତବେଗ ପଇସାଟାଏ ପାଇଁ ମଧ୍ୟ ଅନ୍ୟ ଉପରେ ନିର୍ଭରଶୀଳ ଥିଲା ।

ଘୋଡ଼ାମାନଂକର ଯତ୍ନ ନେବା ଛଡ଼ା ଇଚ୍ଛତବେଗକୁ ଅନ୍ୟ କୌଣସି କାମ ଜଣାନଥିଲା । ସେ ଏଇ ସହରରେ ପ୍ରଚଳିତ ଭାଷା ମଧ୍ୟ ଜାଣିନଥିଲା । ଶେଷରେ ଅନେକ ଚିଂତା କଲାପରେ ମହୀବାଲ (ଘୁରଣକାଗ୍ର)ର କାମ କରିବାପାଇଁ ଆରଂଭ କଲା । ସେ ସହରବାସୀଂକର ପାଳିତ ଗାଈ, ମହିଷି, ଘୋଡ଼ା ସବୁ ଠୁଳ କରି ଚରେଇବା ପାଇଁ ସହର ବାହାରକୁ ନେଇ ଯାଉଥିଲା । ଦିନସାରା ସେ ପଶୁମାନଂକୁ ପଡ଼ିଆରେ ଚରାଉଥିଲା ଓ ନିଜେ ବଂଶୀ ବଜାଉଥିଲା । ସେ ସବୁବେଳେ ବଂଶୀଟିକୁ କାଖରେ ଜାକି ଧରିଥାଏ । ଆଜିକାଲି ଘୁରଣ ପଡ଼ିଆରେ ତା'ର ସୋହନୀ ସହିତ ମିଳନ ହେଉଥିଲା । ଇଚ୍ଛତବେଗ ପାଖରେ ତୁଲାର ବାସନ ପାଇଁ ଦର କଷିଲାଭଳି ସାମର୍ଥ୍ୟ ଆଉ ନଥିଲା ।

ପଂଜାବର ସୋହନୀ ପାଇଁ ବୁଖାରାର ଧନିକପୁତ୍ର ମହୀବାଲ (ଘୁରଣକାଗ୍ର) ପାଲଟିଗଲା ।

ପରଦା ଅଂଚଳରେ ରହିଆସୁଥିବା କଳାକାର କନ୍ୟା ସୋହନୀ ଆଜିକାଲି ବଣଜଂଗଲ ଓ ଘୁରଣ ପଡ଼ିଆରେ ଘୂରିବୁଲୁଥିଲା । ମହୀବାଲର ପ୍ରେମରେ ପଡ଼ି ଘରର କାମଧନ୍ଦା ତାକୁ ବିଷପ୍ରାୟ ଲାଗୁଥିଲା । ଅଂତରଂଗ ସଖୀମାନଂକ ସହିତ ଦେଖା କରିବା ବାହାନାରେ ସେ ସକାଳେ ସଂଧ୍ୟାରେ ସହର ବାହାରକୁ ଖସିଯାଉଥିଲା । ତା'ର ସଖୀମାନେ କେତେବେଳେ ନାଚ ଦେଖାଇ, କେତେବେଳେ ଗୀତ ଗାଇ ମହୀବାଲର ମନୋରଂଜନ କରୁଥିଲେ ।

ପ୍ରେମ ଓ କସ୍ତୁରୀର ବାସ୍ନା ଯେତେ ଲୁଚେଇଲେ ମଧ୍ୟ ଲୁଚିରହେନାହିଁ । ଅଳ୍ପଦିନ ଭିତରେ ସୋହନୀ ଓ ମହୀବାଲର ପ୍ରେମର ଚର୍ଚ୍ଚା ଘରଆଡ଼େ ବ୍ୟାପିଗଲା । ଦୁର୍ନାମ ଓ ଅପବାଦର ଭୟରେ ଯେଉଁ ପାତ୍ର ତା' ହାତରେ ପଡ଼ିଲା ତା' ସହିତ ସୋହନୀର ବିବାହ କରିଦେଇ ତୁଲା ଆଶ୍ୱସ୍ତ ଅନୁଭବକଲା ।

ସୋହନୀ କାକୁତି ମିନତି କରୁଥାଏ—"ବାପା, ମହୀବାଲ ସହିତ ମୋର ସଂପର୍କ ଜନ୍ମଜନ୍ମାନ୍ତରର ସଂପର୍କ ।" କିଂତୁ ସାରାଦିନ ମାଟିର ବାସନମାନଂକ ଭିତରେ ବିତାଉଥିବା ତୁଲା କୁମ୍ଭାର ପାଖରେ ଏସବୁ କଥାର କିଛି ମାନେ ନଥିଲା ।

ଲୁହଭରା ଛଳଛଳ ଆଖିରେ ସୋହନୀକୁ ସବାରିରେ ବସାଇଦେଇ ଶାଶୁଘରକୁ ଠେଲି ଦିଆଗଲା ।

ଝିନାଁ ଆରକୂଳରେ ସୋହନୀର ଶାଶୁଘର ଗାଁ ଥିଲା । ଏ କୂଳରେ ତା' ନିଜ ଗାଁରେ ମହୀବାଲ ସୋହନୀର ବିରହରେ ବ୍ୟାକୁଳ ହୋଇ ଏକାକୀ ପାଗଳଂକ ପରି ଘୂରି ବୁଲୁଥାଏ । ସେ ବୁଲି ବୁଲି 'ସୋହନୀ', 'ସୋହନୀ' ବୋଲି ଡାକଗୁଡ଼ୁଥାଏ । ତା' ଆଖିରୁ ରକ୍ତର ଅଶ୍ରୁ ଗଡ଼ିଯାଉଥିଲା । ଖାଇବାପିଇବା ପ୍ରତି ତା'ର ଆଉ ଧ୍ୟାନ ନଥିଲା । ଗେଲବସରରେ ବଢ଼ିଥିବା ବଣିକପୁତ୍ରର ଦେହ ଶୁଖିଯାଇ କଂଟା ପାଲଟିଗଲା । ସେ ଭଲଭାବରେ ପଂଜାବୀ କହିବାକୁ

ଶିଖିସାରିଥିଲା । ସେ ସବୁବେଳେ ତା'ର ହୃଦୟସ୍ପର୍ଶୀ ସ୍ୱରରେ ସୋହନୀ ପାଇଁ ଗୀତ ଗାଉଥିଲା । ପ୍ରତି ଛଂଦରେ ସୋହନୀର ନାମ । ବଣଜଂଗଲ ସୋହନୀର ନାମରେ ମୁଖରିତ ହୋଇଉଠିଲା ।

ସେଆଡ଼େ ସୋହନୀର ଅବସ୍ଥା ମଧ୍ୟ ତଦ୍ରୂପ ଥିଲା । ହୃଦୟରେ ମହୀବାଲର ସ୍ମୃତି ନେଇ ସେ ନିଜର ପତିକୁ ସ୍ୱୀକାର କରିବାପାଇଁ ମନାକରିଦେଇଥିଲା । ଅହରହ ସେ କେବଳ ମହୀବାଲର ଚିଂତାରେ ବୁଡ଼ିରହୁଥିଲା । ମହୀବାଲ ବ୍ୟତୀତ ଅନ୍ୟ କୌଣସି ଜିନିଷ ପ୍ରତି ତା'ର ଖିଆଲ ନଥିଲା ।

ଦିନେ ପାଗଳ ପରି ବୁଲୁଥିବା ସମୟରେ ମହୀବାଲର ମନେହେଲା ଯେମିତି ସୋହନୀ ତାକୁ ନାଁ ଧରି ଡାକୁଛି । ସେ କାନ ଡେରି ଶୁଣିବାପାଇଁ ଚେଷ୍ଟା କଲା; କିଂତୁ ଯେମିତି ତା' ଗୁଡି ଭିତରୁ ହିଁ ଡାକ ଶୁଣାଯାଉଥିଲା । ମହୀବାଲ୍ ଅଟ୍ଟହାସ୍ୟ କରିଉଠିଲା । ସେ ଯେମିତି ମସ୍ତିଚକା ପଛରେ ଗୋଡ଼ାଇଥିଲା । ମହୀବାଲ୍ ପାଗଳଂକ ପରି ଆହୁରି ଉଚ୍ଚସ୍ୱରରେ ହସୁଥିଲା; କିଂତୁ ଏ କଣ, ପୁଣି ସେଇ ଶବ୍ଦ ! କେହି ଜଣେ ତାକୁ ଡାକୁଥିଲା 'ମହୀବାଲ ! ମହୀବାଲ !' ସେ ଦୌଡ଼ିଯାଇ ଏକ ମୁଂଡିଆ ଉପରକୁ ଚଢ଼ିଗଲା ଓ ଆଖି ମଲମଲ ଆଗକୁ ପଛକୁ ଅନାଇଁଲା । ପାଖରେ କେହି ବି ତ ନଥିଲେ । କିଂତୁ ନା, ସେ ଏବେ ବି ଡାକ ଶୁଣିପାରୁଥିଲା । ବୋଧହୁଏ ଗଛମାନଂକ ଉହାଡ଼ରେ କେହି ଜଣେ ଥିଲା । "ମହୀବାଲ"! "ମହୀବାଲ !" "ମହୀବାଲ !" : 'ମହୀବାଲ' ଶବ୍ଦ ଭାସିଆସୁଥିଲା ଓ ସେଇ ଶବ୍ଦ ତା'ର ପ୍ରତିଟି ନିଃଶ୍ୱାସରୁ ଫୁଟିଉଠୁଥିବା 'ସୋହନୀ' ଧ୍ୱନି ସହିତ ମିଶିଯାଇ ଚାରିଆଡ଼େ ଖେଳିଗଲା—'ସୋହନୀ, ମହୀବାଲ !' 'ସୋହନୀ, ମହୀବାଲ !' 'ମହୀବାଲ, ସୋହନୀ !' 'ମହୀବାଲ-ସୋହନୀ !' ମହୀବାଲ କିଛି ବୁଝି ପାରୁ ନଥିଲା । ତାର ମନେହେଉଥିଲା କେହି ଜଣେ ତାକୁ ଥଟ୍ଟା କରୁଛି । ସେଠି କେହି ବି ତ ନଥିଲେ । କେହି ଜଣେ ତାକୁ ଡାକୁଥିଲା ଓ ପୁଣି ଲୁଚିଯାଉଥିଲା । କେତେବେଳେ ତା'ର ମନେ ହେଉଥିଲା ଯେ ବାହାରୁ ଶବ୍ଦ ଆସୁଛି, କେତେବେଳେ ମନେହେଉଥିଲା ତା' ଭିତରୁ ହିଁ ଶବ୍ଦ ଆସୁଛି—'ସୋହନୀ ମହୀବାଲ !' 'ମହୀବାଲ ସୋହନୀ !' ହଠାତ୍ ତା'ର ମନେହେଲା ଯେ ଦୂରରେ ଥିବା ଏକ ଗହ୍ୱର ଭିତରୁ ଶବ୍ଦ ହେଉଛି । ଦୌଡ଼ିଯାଇ ମହୀବାଲ ସେଇ ଗହ୍ୱର ତଳକୁ ଓହ୍ଲାଇଗଲା । ଓହ୍ଲାଇସାରିଲା ପରେ ତାକୁ ଲାଗିଲା ଶବ୍ଦ ବାହାରୁ ଆସୁଛି । ସାଂଗେ ସାଂଗେ ସେ ଉପରକୁ ଚଢ଼ିବାକୁ ଲାଗିଲା । ସେ ଥକିଯାଇ ଧଇଁସଇଁ ହେବାକୁ ଲାଗିଲା । ଅଖିଆ ଅପିଆ ଖାଲି ପାଦରେ କ୍ଲାଂତ ମହୀବାଲ ଉପରକୁ ଚଢ଼ିସାରିବା ପରେ ଅନୁଭବ କଲା ଯେ ପୁଣି ଗହ୍ୱର ଭିତରୁ ସେଇ ସ୍ୱର ଆସୁଛି—'ସୋହନୀ ମହୀବାଲ !' 'ମହୀବାଲ ସୋହନୀ !' ଧାଇଁଯାଇ ସେ ପୁଣି ଗହ୍ୱର ତଳକୁ ଓହ୍ଲାଇଗଲା । ସେ ଯେତେ ତଳକୁ ଯାଉଥାଏ ତା'ର ମନେହେଉଥାଏ ଯେ ସ୍ୱର ସେତିକି ପଛରେ ରହିଯାଉଛି । ଗହ୍ୱର ଭିତରେ ପହଂଚି ସେ ବୁଝିପାରିଲା ଯେ ପ୍ରକୃତରେ ଶବ୍ଦ ବାହାରୁ ଆସୁଛି ।

ଉପରୁ କେଉଁଠୁ ସେ ଶୁଣିପାରୁଥିଲା—'ସୋହ୍ନୀ ମହୀବାଲ !' 'ମହୀବାଲ ସୋହ୍ନୀ !' ପରିଶ୍ରମ ଯୋଗୁଁ ଝାଳନାଳ ହୋଇ ଉନ୍ମାଦଂକ ପରି ସେ ପୁଣି ଉପରକୁ ଚଢ଼ିବାକୁ ଲାଗିଲା । ଉପରେ ଛିଡ଼ାହୋଇ ସେ ଆଖି ତରାଟି ଚାରିଆଡ଼କୁ ଦେଖିଲା । କୁଆଡ଼େ ଚାଲିଗଲା ସେ ଶବ୍ଦ ? ଶବ୍ଦ ଦୂରକୁ—ଅନେକ ଦୂରକୁ ଚାଲିଯାଇଥିଲା । ପୁଣି ପାଖକୁ—ଅନେକ ପାଖକୁ ଚାଲିଆସୁଥିଲା । ବିରକ୍ତ ହୋଇ ମହୀବାଲ ନିଜର ପିନ୍ଧିଥିବା ଲୁଗାକୁ ଚିରି ଚିରି କରି ଫିଙ୍ଗିଦେଲା । ଝାଳନାଳ ଶରୀରରେ ଧୂଳିମାଟି ଲାଗିଥାଏ ଓ ମହୀବାଲ ପାଗଳପରି ଏ ସ୍ଥାନରୁ ସେ ସ୍ଥାନକୁ ଏପଟ ସେପଟ ଧାଇଁଯାଉଥାଏ । ଧାଉଁ ଧାଉଁ ସେ ଝିନାଁ ନଦୀକୂଳରେ ପହଂଚିଗଲା । ବୋଧହୁଏ ଜଳର ତରଂଗମାନଂକ ଭିତରୁ ଡାକ ଶବ୍ଦ ଆସୁଥିଲା । ଆରେ, ଶବ୍ଦ ତ ଝିନାଁର ପାଣି ଭିତରୁ ହିଁ ଆସୁଥିଲା । ମହୀବାଲ ନଦୀ ଭିତରକୁ ଡେଇଁପଡ଼ିଲା ।

ନଦୀର ପ୍ରଖର ସୋ୍ରତ ସହିତ ମହୀବାଲ ସଂଘର୍ଷ କରିବାକୁ ଲାଗିଲା । ପଛରେ ଛାଡ଼ି-ଆସିଥିବା କୂଳ ଅନେକ ଦୂରରେ ରହିଯାଇଥିଲା ଓ ଆଗରେ ଥିବା କୂଳ ପର୍ଯ୍ୟଂତ ଆଖି ପାଉ ନଥିଲା । ମହୀବାଲ ହାତଗୋଡ଼ ଛାଟି ଝିନା ନଦୀର ଉଦ୍ଧତ ଲହରୀର ସୋ୍ରତକୁ କାଟି ଆଗକୁ ବଢ଼ୁଥାଏ । ହଠାତ୍ ସେ ସୋହ୍ନୀର ସ୍ୱର ଶୁଣିବାକୁ ପାଇଲା । ହଁ, ତା'ରି ସ୍ୱର ତ ! "ମହୀବାଲ !" "ମହୀବାଲ !" ର ବେଦନାଭରା ସ୍ୱର ! ମହୀବାଲ ଅଧୈର୍ଯ୍ୟ ହୋଇ ହାତଗୋଡ଼ ଛାଟିବାକୁ ଲାଗିଲା । ଏଇଠି ଝିନାଁ କୂଳରେ ସୋହ୍ନୀ ବସି କାଂଦୁଥିଲା । ଠିକ୍ ସେତିକିବେଳେ ଜଣେ ନାଉରୀର ଆଖି ମହୀବାଲ ଉପରେ ପଡ଼ିଲା ଓ ସେ ନିଜର ନାଆକୁ ମହୀବାଲ ପାଖକୁ ବାହିନେଇ ତାକୁ ନାଆ ଉପରକୁ ଟାଣିନେଲା ।

ସୋହ୍ନୀ ବାସ୍ତବରେ ତା' ସାମ୍ନାରେ ଛିଡ଼ାହୋଇଥିଲା । ତା' ଆଖିରୁ ଧାର ଧାର ଲୁହ ଗଡ଼ିଯାଉଥାଏ । ମହୀବାଲ ନିଜ ଆଖିକୁ ବିଶ୍ୱାସ କରି ପାରୁନଥାଏ; ହେଲେ ଅବିଶ୍ୱାସର ପ୍ରଶ୍ନ ନଥିଲା । ସୋହ୍ନୀ ନିଜେ ଛିଡ଼ାହୋଇଥିଲା । ଦୁହିଁଙ୍କର ହୃଦୟ ଆନଂଦରେ ଉଚ୍ଛୁଳି-ଗଲା ଓ ଦୁହେଁ ହାତ ବଢ଼େଇ ପରସ୍ପର ଆଡ଼କୁ ଆଗେଇଗଲେ । ସଂଧ୍ୟାର ଛାଇ-ଅଂଧାର ଶୀତଳ ଓ ଗାଢ଼ ହୋଇଆସିଲା ।

ସେମାନେ ସ୍ଥିର କଲେ ଯେ ପ୍ରତିଦିନ ସଂଧ୍ୟାରେ ମହୀବାଲ ଚରାଉଥିବା ପଶୁମାନଂକୁ ଘରେ ଛାଡ଼ିଦେଇ ସୋହ୍ନୀ ସହିତ ସାକ୍ଷାତ କରିବା ପାଇଁ ଆସିବ । ଝିନାଁ କୂଳରେ ଥିବା ପଡ଼ିଆରେ ତାଂକର ନିୟମିତ ମିଳନ ହେବ ।

ମହୀବାଲ ଏକ ଚମଡ଼ା ଅଳି କିଣିଲା । ରାତିହେବା ପରେ ସେ ସେଇ ଚମଡ଼ା ଅଳିଟିରେ ପବନ ଭର୍ତ୍ତିକରି ତା' ଉପରେ ଭରା ଦେଇ ନଦୀରେ ପହଁରି ପହଁରି ସୋହ୍ନୀର ଗାଁର ନଦୀକୂଳକୁ ପହଂଚି ଯାଉଥିଲା । ସେଇଠି ବସି ସେ ତା'ର ପ୍ରେମିକାର ପ୍ରତୀକ୍ଷା କରୁଥିଲା ଓ ବନଶୀ ପକେଇ ମାଛ ଧରୁଥିଲା କିଂବା ବଂଶୀ ବଜାଉଥିଲା ।

"ସୋହ୍ନୀ ! ତୋ'ରି ପ୍ରତୀକ୍ଷାରେ ବାଜୁଥିବା ବଂଶୀସ୍ୱର ଶୁଣିବାପାଇଁ ଆସି ଅନେକ ମାଛ ଧରାପଡ଼ଂତି", ମହୀବାଲ କହୁଥିଲା ।

ସୋହ୍ନୀ ହସିଦେଇ ଉତ୍ତର ଦେଉଥିଲା, "ଆରେ ବୋକା ! ତୁ ଦିନକୁ କେବଳ ଗୋଟାଏ କରି ମାଛ ଧର ।"

ପ୍ରତିଦିନ ସଂଧ୍ୟାରେ ମହୀବାଲ ଗୋଟାଏ ମାତ୍ର ମାଛ ଧରି ସୋହ୍ନୀକୁ ପ୍ରତୀକ୍ଷା କରୁଥିଲା । ସୋହ୍ନୀ ଆସିବା ପରେ ଦୁହେଁ ନିଆଁରେ ମାଛକୁ ପୋଡ଼ି ଖାଉଥିଲେ ।

ମହୀବାଲ ସାଥିରେ ବସି ମାଛ ଖାଇବା ପାଇଁ ସୋହ୍ନୀକୁ ବହୁତ ଭଲଲାଗୁଥିଲା । ସେମାନେ ମାଛ ଖାଉଥିଲେ ଓ ସୋହ୍ନୀର ମୁହଁର କଥା ସରୁ ନଥିଲା । ରାତିସାରା ବସି ସେମାନେ କଥାହେଉଥିଲେ । ଭୋର ହେଲାକ୍ଷଣି ସୋହ୍ନୀ ଚୁପ୍‌ଚାପ୍ ଯାଇ ନିଜ ବିଛଣାରେ ଗଡ଼ିଯାଉଥିଲା ।

ଦିନେ ଝିନା ନଦୀରେ ପ୍ରବଳ ବନ୍ୟା ଆସିଥାଏ । ବର୍ଷାଦିନ । ବୋଧହୁଏ ନଦୀ ଉପର ମୁଣ୍ଡରେ କେଉଁଠି ବହୁତ ବର୍ଷା ହୋଇଥିଲା । କୂଳ ଡେଇଁ ଝିନାର ବଢ଼ି ପାଣି ଅନେକ ଦୂରକୁ ମାଡ଼ିଯାଇଥାଏ । କ୍ଷେତବାଡ଼ି ପାଣିରେ ବୁଡ଼ିଯାଇଥିଲା ଓ ଫସଲ ନଷ୍ଟହୋଇଯାଇଥିଲା । କୂଅ ପୋଖରୀ ସବୁ ପାଣିରେ ଢଳୁଢଳୁ ହେଉଥାଂତି । ମହୀବାଲ କୌଣସି ପ୍ରକାରରେ ସୋହ୍ନୀ ଥିବା କୂଳରେ ପହଂଚଗଲା; କିଂତୁ ଆଜି ମାଛ କେମିତି ଧରାହେବ ? ମହୀବାଲ ଅନେକ ସମୟ ଧରି ଏପଟ ସେପଟ ହେଲା; କିଂତୁ ତାକୁ କୌଣସିଠାରେ ମଧ୍ୟ ମାଛର ଚିହ୍ନବର୍ଣ୍ଣ ଦିଶିଲା ନାହିଁ । ପାଣି ଗୋଳିଆ ହୋଇଯାଇଥିଲା । ନଦୀର ସୁଅରେ ଅନେକ ଗଛଲତା ଭସିଆସିଥିଲା । କେଉଁଠି ହେଲେ ମାଛ ନଥିଲେ । ଆଉ ମଧ୍ୟ ନଦୀର ସୁଅ ଅନେକ ଜାଗାରେ ମାଇଲ ମାଇଲ ଧରି କୂଳ ଭାଂଗିଦେଇଥାଏ । ବନଶୀ ଅବା କେଉଁଠି ପକାଇବ ? ଜାଲ କେଉଁଠି ପକାଇବ ? ଏପଟେ ସୋହ୍ନୀର ଆସିବା ସମୟ ପାଖେଇ ଆସୁଥାଏ । ମହୀବାଲ ଚିଂତିତ ହୋଇପଡ଼ିଲା ଯେ ସେ କେମିତି ଅବା ନିଜର ପ୍ରେମିକାକୁ ଖାଲିହାତରେ ଭେଟିବ । ହଠାତ୍ ତା' ମନଭିତରେ ଏକ ଉପାୟ ଦେଖାଗଲା ଓ ଖୁସିରେ ତା' ଓଠରେ ସ୍ମିତହାସ ଫୁଟିଉଠିଲା ।

କିଂତୁ ମହୀବାଲ ଯାହା କିଛି ଭାବିଥିଲା, କରିପାରିଲାନି । କଣ କରିବ; ଯା' ଭାବିଥିଲା ତା' କରିବାପାଇଁ ତା'ପାଖରେ ଆବଶ୍ୟକୀୟ ଉପକରଣ ନଥିଲା । ସୋହ୍ନୀ ଠିକ୍ ସମୟରେ ପହଂଚିଲା । ସେ ମହୀବାଲକୁ ବାରଂବାର ପରିହାସ କରୁଥାଏ ଯେ ମୁଁ ଆଜିକାଲି ଶଶୁର ଘରେ ଖାଇବା ଛାଡ଼ିଦେଇଛି । ଯାହାକୁ ଥରେ ମହୀବାଲ ସାଥିରେ ଖାଇବାର ସୌଭାଗ୍ୟ ମିଳିଛି, ସେ ଅନ୍ୟ କୌଣସି ସ୍ଥାନରେ ଖାଇଲେ କ'ଣ ତା' ତଣ୍ଟିରେ ପଶିବ ? ଏହା ଶୁଣି ମହୀବାଲର ମୁଂଡ ତଳକୁ ହୋଇଗଲା । ଲଜ୍ଜାରେ ତାକୁ ମାଟି ଭିତରେ ମିଶିଯିବାକୁ ଇଚ୍ଛାହେଲା ।

ତା' ପରଦିନ ଝଡ଼ବର୍ଷା ସେଇଭଳି ଲାଗିରହିଥାଏ । ବର୍ଷା ସେଇଭଳି ଅଜାଡ଼ିହୋଇ ପଡ଼ୁଥାଏ । ନଦୀ ଆଗଭଳି ଫୁଲି ରହିଥାଏ । ମହୀବାଲ ଅନେକ ଚେଷ୍ଟାକଲା; କିଂତୁ ଆଜି ମଧ୍ୟ ତା' ହାତରେ ଗୋଟାଏ ହେଲେ ମାଛ ପଡ଼ିଲାନି । କିଂତୁ ଆଜି ରାତିରେ ସୋହ୍ନୀ

ଆସିଲେ ମହୀବାଲକୁ ଆଉ ସଂକୁଚିତ ହେବାକୁ ପଡ଼ିବ ନାହିଁ । ସେ ନିଜର ପ୍ରେମିକାର ସତ୍କାର ପାଇଁ ସବୁ ବ୍ୟବସ୍ଥା କରି ରଖିଥିଲା ।

ଠିକ୍ ସମୟରେ ସୋହ୍‌ନୀ ଛପ୍ ଛପ୍ ଶବ୍ଦକରି ହସି ହସି ଆସିଲା । ପ୍ରତିଦିନ ନୂଆ ରଂଗ, ନୂଆ ରୂପ, ନୂତନ ସ୍ୱାଦ ! ତାଙ୍କ ପାଇଁ ପ୍ରେମର ସୀମା ନାହିଁ; ଆକାଶଛୁଆଁ ଥିବା ଗୁଡ଼ିପରି ସେ କେବଳ ଊର୍ଦ୍ଧ୍ୱକୁ ଉଠୁଥାଏ ।

କିଛି ସମୟ ପରେ ସୋହ୍‌ନୀ ମହୀବାଲ ଧରିଥିବା ମାଛଖଂଡଗୁଡ଼ିକୁ କଂଟାରେ ଗୁଂଥି ନିଆଁରେ ସେକିବାକୁ ଆରଂଭ କଲା ।

"ଆଜି ତୋ'ର ମାଛ କେମିତି କଂଟାରେ ଲଗୁନାହିଁ ରେ ?"

"ହୁଁ ।"

"ଖୁବ୍ ଡେରି ଲଗୁଛି ?"

"ହୁଁ !"

ଚିଲମ ଟାଣୁଥିବା ମହୀବାଲ ଯେମିତି ନିଜ ଚିଂତାରେ ଲୀନ ହୋଇଯାଇଥିଲା ।

ଏବଂ ମାଛ ଖାଇବାପାଇଁ ଆରଂଭ କଲାକ୍ଷଣି ସୋହ୍‌ନୀର ବିଶ୍ୱାସ ହୋଇଗଲା ଯେ ନିଶ୍ଚୟ କିଛି ଘଟିଛି । ଆଜି ମାଛର ସ୍ୱାଦ ଭିନ୍ନ ଥିଲା । ସୋହ୍‌ନୀର ନିଃଶ୍ୱାସ ବନ୍ଦ ହୋଇଗଲା—ସେ ଦେଖିପାରିଲା ଯେ ମହୀବାଲର ଲୁଂଗିକାନି ରକ୍ତରେ ଜୁଡ଼୍‌ବୁଡ଼୍ ହୋଇଯାଇଛି ।

"ଏ ରକ୍ତ କୁଆଡ଼ୁ ଆସିଲା !" ସୋହ୍‌ନୀ ପାଖକୁ ଯାଇ ଲୁଂଗିକାନିକୁ ଛୁଇଁ ଦେଖିଲା ଓ ମହୀବାଲ ତା' କୋଳ ଉପରେ ଗଡ଼ିପଡ଼ିଲା ।

ଆଜି ମହୀବାଲ ନିଜ ଦେହର ମାଂସ କାଟି ତା'ର ପ୍ରେମିକାକୁ ଚର୍ଚ୍ଚା କରିଥିଲା । ସେ ଆଜି ମଧ୍ୟ ମାଛ ପାଇନଥିଲା । ସେ କି'ଣ ଆଜି ରାତିରେ ମଧ୍ୟ ସୋହ୍‌ନୀକୁ ଖାଲିହାତରେ ଫେରାଇ ଦେଇଥାଂତା ? ଅନେକ ଦିନ ହେଲା ରାତିରେ ମହୀବାଲ ବ୍ୟତୀତ ଅନ୍ୟ କାହା ସହିତ ଖାଇବା ପାଇଁ ସୋହ୍‌ନୀକୁ ରୁଚୁ ନଥିଲା ।

ମହୀବାଲର ପ୍ରେମ ଅନେକ ଊର୍ଦ୍ଧ୍ୱକୁ ପହଂଚିଯାଇଥିଲା । ତା'ର ଓଠ, ତା'ର ଗାଲ, ତା'ର ଆଖିପତା ଓ ତା'ର କପାଳରେ ଚୁଂବନର ସ୍ପର୍ଶଦେଇ ସୋହ୍‌ନୀ ମହୀବାଲର ଚେତନା ଫେରାଇଆଣିଲା । ବାରଂବାର ଦୁହିଁଙ୍କର ଓଠ ଏକାଠି ଯୋଡ଼ି ହୋଇଯାଉଥିଲା । ଉଭୟେ ପରସ୍ପରକୁ ଢୋକ ଢୋକ କରି ପିଇଯାଉଥିଲେ । ସେଦିନ ରାତିରେ ଏକ ନିଆଁ ଶିଖାଭଳି ସୋହ୍‌ନୀ ମହୀବାଲର ଅଂଗପ୍ରତ୍ୟଂଗରେ ବ୍ୟାପିଯାଇଥିଲା । ସେ ମହୀବାଲର ପ୍ରତ୍ୟେକ ରକ୍ତ-କଣିକାକୁ ପ୍ରେମ କରୁଥିଲା । ସକାଳ ହେଲା । ତା'ର ଫେରିବା ସମୟ ଆସିଗଲେ ସୁଦ୍ଧା ସୋହ୍‌ନୀର ହୃଦୟ ମହୀବାଲକୁ ଛାଡ଼ି ଚାଲିଯିବା ପାଇଁ ପ୍ରସ୍ତୁତ ନଥିଲା ।

ଶେଷରେ ବାଧ୍ୟହୋଇ ସେଠାରୁ ଯିବା ସମୟରେ ମହୀବାଲକୁ କଥା ଦେବାପାଇଁ କହିଲା ଯେ ତା'ପରଦିନ ସଂଧ୍ୟାରେ ଓ ତା' ପରେ ମଧ୍ୟ ସେ ସୋହ୍‌ନୀ ପାଖକୁ ଆସିବ

ନାହିଁ; ତା' ପରିବର୍ତ୍ତେ ସୋହନୀ ମହୀବାଲର କୂଳକୁ ପହଂଚିଯିବ! । ଖଂଡଆ ଗୋଡ଼ର କ୍ଷତ ଭଲ ନହେବା ପର୍ଯ୍ୟଂତ ସେ ପାଣିରେ ଗୋଡ଼ ଦେବନି । ଏବେ ମଧ୍ୟ ଫେରିଲ-ବେଳେ ନାଆରେ ଯିବାପାଇଁ ମହୀବାଲ କଥାଦେଲା । ସେମାନେ ଠିକ୍ କଲେ ଯେ 'ଭୁଖା କମଲା' ସନ୍ନ୍ୟାସୀର କବରଠାରେ ତାଂକର ସାକ୍ଷାତ ହେବ ।

ଏତେ ସମୟଧରି କଥା ହେଉ ହେଉ ଓ ଏତେଗୁଡ଼ାଏ ନିଷ୍ପତ୍ତି ନେଉ ନେଉ ଆଜି ସୋହନୀର ଫେରିବାପାଇଁ ଅନେକ ବିଳଂବ ହୋଇଯାଇଥିଲା । ସେ ଚୁପ୍‌ଚାପ୍ ନିଜ ଅଗଣାକୁ ପଶିଲାବେଳେ ତା'ର ମନେହେଲା ଯେ ଲକ୍ଷ ଲକ୍ଷ ଆଖି ତା' ଆଖିକୁ କ୍ରୋଧଦୃଷ୍ଟିରେ ଅନାଉଛଂତି । ତା'ର ଶାଶୁ ଓ ନଣଂଦ ନିଜନିଜର ଖଟରେ ଶୋଇପଡ଼ିଥିବାର ଛଳନା କରି ଆଖି ବୁଜି ପଡ଼ିଥିଲେ ।

ପରଦିନ ସକାଳେ ଶାଶୁ ଓ ନଣଂଦ ଯେମିତି ଜଳିଯାଉଥିଲେ । ସେଇ ଧାସରେ ସୋହନୀକୁ ନିଜର କୋମଳ ଶରୀର ପୋଡ଼ିଗଲା ପରି ଲାଗିଲା । ସେମାନେ ଯେମିତି ଶତ୍ରୁତା ଓ ଈର୍ଷାର ବହ୍ନି ପାଲଟିଯାଇଥିଲେ । ଦିନଯାକ ଅଗଣାର ଗହଳିଭିତରେ ସୋହନୀକୁ ଶ୍ୱାସରୁଦ୍ଧ ହୋଇଆସିଲା ପରି ଲାଗୁଥାଏ । ସେ ତା'ର ଚାରିପଟେ ନିଜ ପାଇଁ ପ୍ରତିକୂଳ ବାତାବରଣର ତୀବ୍ର ଗଂଧ ଅନୁଭବ କଲା । ପରିବାରର ଲୋକମାନେ ଘରକୋଣରେ ଛିଡ଼ାହୋଇ ଯେମିତି ତା' ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଥିଲେ ।

କୌଣସି ପ୍ରକାରେ ରାତି ହେଲା । ଘରଲୋକ ନିଦରେ ଶୋଇଗଲେ । ଅଗଣାରେ ଲୋକେ ଶୋଇପଡ଼ିବାପରେ ସୋହନୀ ମହୀବାଲ ସହିତ ମିଳନ ଉଦ୍ଦେଶ୍ୟରେ ବାହାରିପଡ଼ିଲା । ସେ ଝିଁନା ନଈ ପାରିହେବା ପାଇଁ ରୋଷେଇଘରୁ ଏକ ମାଠିଆ ଉଠେଇ କାଖରେ ଧରିଲା ।

ତାର ଦୁଷ୍ଟ ନଣଂଦ ଶୋଇବାର ବାହାନା କରି ଖଟରେ ପଡ଼ିଥାଏ । ଯେମିତି ସୋହନୀ ବାହାରକୁ ବାହାରିଛି ସେ ଧିର୍ କିନା ଉଠି ପାଦ ଚାପି ଚାପି ସୋହନୀର ଅନୁସରଣ କଲା । ତା'ର ଶାଶୁ ଖଟ ଉପରେ ପଡ଼ିରହି ମନେମନେ ବିଷ ଉଦ୍‌ଗାର କରିବାକୁ ଲାଗିଲା ।

ଘର ଅଗଣାରୁ ବାହାରିଲାପରେ ସୋହନୀ ତରତର ହୋଇ ଝିଁନା କୂଳରେ ପହଂଚଗଲା । ନଦୀ ଆଜି ଏଭଳି ଭାବରେ ଶାଂତ ଥିଲା ଯେମିତିକି ତା'ର କେବେହେଲେ କିଛି ପରିବର୍ତ୍ତନ ଅସିନଥିଲା । ସୋହନୀ ଆଗପଛ ନ ଦେଖି ମହୀବାଲ ସହିତ ମିଳନର ଆତୁରତାରେ ନଈ ଭିତରେ ପହଁରିବାକୁ ଲାଗିଲା । ତା'ର ନଣଂଦ କ'ଣ କରିବ, କିଛି ବୁଝି ନପାରି ପଛରେ ରହିଗଲା । ତା' ଆଖି ଆଗରେ ଦେଖୁ ଦେଖୁ ସୋହନୀ ଅଦୃଶ୍ୟ ହୋଇଗଲା ।

ସୋହନୀର ନଣନ୍ଦ ରାତିସାରା ସେଇଭଳି ଭାବରେ ନଈକୂଳରେ ବସି ନାନା ମନ୍ଦ ଉପାୟ ପାଞ୍ଚୁଥାଏ ଓ ରାଗରେ ଥରୁଥାଏ । ପାହାନ୍ତା ସମୟରେ ସେ ଦେଖିଲା ଯେ ସୋହନୀ ମାଠିଆ ଉପରେ ଭରାଦେଇ ପହଁରି ପହଁରି ଆସୁଛି ।

ଠିକ୍ ସିଂଧି କାଟିଲାବେଳେ ଚୋରକୁ ଧରିବା ପାଇଁ ନଣଂଦର ଇଚ୍ଛା ହେଉଥାଏ । କିନ୍ତୁ ସେ ତାହା କଲା ନାହିଁ । ଏକ ପ୍ରକାଣ୍ଡ ବରଗଛ ତଳେ ଚୁପ୍‌ଚାପ୍ ଠିଆହୋଇ

ସେ ନୀରବରେ ସୋହ୍ନୀର ଗତିବିଧି ଲକ୍ଷ୍ୟ କଲା ।

ସୋହ୍ନୀ ଝିଁନା ନଈ ଭିତରୁ ବାହାରି ଆସି ନିଜର ଲୁଗା ଚପୁଡ଼ିଲା । ଆହା, କେତେ ସୁନ୍ଦର ଦିଶୁ ନ ଥିଲା ସତେ ! ଜହ୍ନ-ଆଲୁଅରେ ତା'ର ରୂପର ଜ୍ୟୋତି ଆଖିକୁ ଝଲସାଇ ଦେଉଥିଲା । ତା'ର ନଣନ୍ଦ ଆଖି ମିଟିମିଟି କରି ସୋହ୍ନୀ ଆଡ଼କୁ ଦେଖୁଥାଏ । ସୋହ୍ନୀ ମାଠିଆଟିକୁ ଏକ ବୁଦା ଭିତରେ ଲୁଚାଇ ଦେଇ ଘର ଆଡ଼କୁ ଆଗେଇଗଲା । ସକାଳ ହେବା ପୂର୍ବରୁ ସେ ନିଜ ଖଟରେ ଶୋଇଗଲା । ଗରମ ଦିନ—ତା'ର ଓଦାଲୁଗା ବାଟରେ ଶୁଖିଯାଇଥିଲା ।

ସୋହ୍ନୀର ନଣନ୍ଦ ତା' ମାଆକୁ ସବୁ କଥା କହିଲା । ନଣନ୍ଦ ଈର୍ଷାରେ ଜଳି-ଯାଉଥିଲା । ସେ ବୟସରେ ସୋହ୍ନୀଠାରୁ ଅନେକ ବଡ଼ ହେଲେ ସୁଦ୍ଧା ଏ ପର୍ଯ୍ୟନ୍ତ ତାକୁ କୌଣସି ବର ମିଳିନଥିଲା; କିନ୍ତୁ ବାହାହେଲା ପରେ ମଧ୍ୟ ସୋହ୍ନୀ ସ୍ୱାମୀକୁ ଛାଡ଼ି ଅନ୍ୟ ଏକ ପ୍ରେମିକ ସହିତ ପ୍ରେମରେ ମାତିଥିଲା ।

ଶେଷରେ ମା' ଝିଅ ମିଶି ନିଷ୍ପତ୍ତି କଲେ ଯେ ଯେଉଁ ଝିଅ ତାଙ୍କ ପୁଅକୁ ଦଗାଦେଉଛି, ତାକୁ ମୂଳରୁ ମାରିଦେବା ଉଚିତ । ସୋହ୍ନୀର ନଣନ୍ଦ କୁମ୍ଭାର ଚକ ପାଖରେ ଥୁଆ-ହୋଇଥିବା କଞ୍ଚା ମାଟିର ଏକ ମାଠିଆ ନେଇ ଝିନାଁ ନଦୀକୂଳର ବୁଦା ଭିତରେ ରଖିଦେଲା ଓ ସୋହ୍ନୀର ପୋଡ଼ା ମାଠିଆଟିକୁ ନେଇଆସିଲା ।

ତା' ପରଦିନ ରାତିରେ ସୋହ୍ନୀ ଠିକ୍ ସମୟରେ ଉଠି ବାହାରିଗଲା । ମହୀବାଲ ସହିତ ମିଳନ ପାଇଁ ତା' ମନ ଆତୁର ଥିଲା । ଏଣୁ ଝଡ଼ଭଳି ଛୁଟିଯାଇ ନଈକୂଳରେ ପହଞ୍ଚିଗଲା । ସେ ବୁଦାଭିତରେ ରଖାହୋଇଥିବା ମାଠିଆଟିକୁ ଉଠାଇ ନଈ ଭିତରକୁ ଓହ୍ଲାଇଗଲା ।

ସେଦିନ ପୂର୍ଣ୍ଣିମାର ରାତି ଥିଲା; କିନ୍ତୁ ନଦୀରେ ପୁଣି ବଢ଼ି ଆସିଯାଇଥିଲା । ମହୀବାଲ ସହିତ ମିଳନର ଉଦ୍‌ବେଗରେ ବ୍ୟଗ୍ର ସୋହ୍ନୀ ନଈର ଲହରୀମାନଙ୍କ ଭିତରେ ଭାସି-ଯାଉଥିଲା । ସେ ବେଶି ଦୂରକୁ ଯାଇନଥିଲା—ଅନୁଭବ କଲା ଯେ ସେ ଧରିଥିବା ମାଠିଆଟି ଦେହରେ ତା' ହାତ ପଶିଯାଉଛି । ମାଠିଆଟି ପ୍ରକୃତରେ ପୋଡ଼ାହୋଇ ନଥିବା କଞ୍ଚା ମାଟିର ଥିଲା; ଏଣୁ କାଦୁଅ ପାଲଟିଯାଇ ପାଣିରେ ମିଳେଇଗଲା । ସୋହ୍ନୀ ମଝିନଈକୁ ପହଁଚସାରିଥିଲା ।

ସାମ୍ନା କୂଳରେ ବୁଢ଼ା ସନ୍ନ୍ୟାସୀର କବର ଥିଲା । ସେଇଠି ମହୀବାଲ ସୋହ୍ନୀର ଆସିବା ବାଟକୁ ଆତୁର ନୟନରେ ଅନାଇ ବସିଥିଲା । ସୋହ୍ନୀ ମହୀବାଲକୁ ଡାକିବାକୁ ଲାଗିଲା । ନଦୀ ଭିତରେ ପ୍ରବଳ ବେଗରେ ଝଡ଼ ବୋହିବାକୁ ଲାଗିଲା । ସତେ ଯେମିତି ତାହା ପ୍ରଳୟର ବାତ୍ୟା ଥିଲା । ଢେଉମାଡ଼ରେ ସୋହ୍ନୀ ବ୍ୟତିବ୍ୟସ୍ତ ହୋଇପଡ଼ୁଥିଲା । ସୋହ୍ନୀ ବାରମ୍ବାର ମହୀବାଲର ନାଁ ଧରି ଚିତ୍କାର କରୁଥାଏ । ସେ ନଈପାଣିରେ ଉବୁଟୁବୁ ହେବାକୁ ଲାଗିଲା । ସୋହ୍ନୀ ଯେତେଥର ମହୀବାଲର ନାମ ଧରି ରଡ଼ିଛାଡ଼ୁଥାଏ, ତା'ର

ନଣଂଦ ଅନ୍ୟ କୂଳରେ ଛିଡ଼ାହୋଇ ଖୁସିରେ ଠୋ’-ଠୋ’ ହୋଇ ହସିଉଠୁଥିଲା । ଝଡ଼ ରାତିରେ ତା’ର ଅଟ୍ଟହାସ ଡାଆଣୀର ଶବ୍ଦ ଭଳି ପ୍ରତିଧ୍ୱନିତ ହେଉଥିଲା ।

ମହୀବାଲ ସୋହନୀର ଚିତ୍କାର ଶୁଣିପାରିଲା । ବାଡ଼ି ଉପରେ ଭରାଦେଇ ସେ କବର ବାହାରକୁ ଆସିଲା । ଆହା; କି ସୁନ୍ଦର ରୂପବାନ୍ ଯୁବକ ଥିଲା ! ଏଥର ଯେମିତି ସେ ସୋହନୀର ଡାକ ଶୁଣିଛି, ଆଗପଛ କିଛି ନ ବିଚାରି ସେଇମିତି ଖଂଡିଆ ଗୋଡ଼ରେ ନଈ ଭିତରକୁ ଡେଇଁପଡ଼ିଲା ।

ମହୀବାଲ ନଈ ଭିତରକୁ ଝାଂପିପଡ଼ିବା ପରେ ଅଳ୍ପକ ପାଇଁ ଖୁବ୍ ଜୋର୍‌ରେ ଏକ ଝଡ଼ ଆସିଲା । ପର ମୁହୂର୍ତ୍ତରେ ସୋହନୀ ଓ ମହୀବାଲ ସୁଅମଝିରେ ପରସ୍ପରର କୋଳରେ ଥିଲେ । ମୁହୂର୍ତ୍ତକ ପାଇଁ ସୋହନୀର ନଣଂଦ ତାକୁ ଦେଖିଲା ଓ ତା’ପରେ ନଈର ଲହରୀ ଦୁଇଜଣଂକୁ ଯେମିତି ଜଳକୁ ଝାଂପିନେଲା । ତା’ପରେ ଦୁହିଁଙ୍କର ଆଉ ପତ୍ତା ମିଳିଲାନି । ନା ସୋହନୀ ଥିଲା, ନା ମହୀବାଲ ? ଦି’ ଜଣଯାକ ପରସ୍ପରର ଆଲିଂଗନ ଭିତରେ ହିଁନାଇ ପାଣିଭିତରେ ହଜିଗଲେ । କୂଳରେ ଛିଡ଼ାହୋଇ ସୋହନୀର ନଣଂଦ ଆଖି ମିଟିମିଟି କରି ଚାହିଁରହିଥାଏ ।

---

ଶିବ କୁମାର

# ପୂରନଭଗତ

ଏହା ହେଉଛି ପଂଜାବର ସିଆଲକୋଟ୍ ସହରର କଥା । କେଉଁ କାଳରେ ସେଠି ରାଜା ସଲବାନଙ୍କର ରାଜ୍ୟ ଥିଲା । ତାଙ୍କର ରାଣୀ ଇଛରାଁଙ୍କ ଗର୍ଭରୁ ପୁତ୍ର-ସନ୍ତାନ ଜନ୍ମ ହେଲା ପରେ ରାଜାଙ୍କର ମନେହେଲା ଯେ ତାଙ୍କର ସମସ୍ତ ମନସ୍କାମନା ପୂର୍ଣ୍ଣ ହୋଇ-ଯାଇଛି । ସେ ନିଜ ପୁଅର ନାମ ରଖିଲେ ପୂରନ ।

ସେଇ ସମୟରେ କାନଫଟା ଯୋଗୀମାନଙ୍କର ଖୁବ୍ ପ୍ରତିପତ୍ତି ଥିଲା । ନାଥମାନେ ନାରୀମାନଙ୍କର ଅତ୍ୟଂତ ନିନ୍ଦୁକ ଥିଲେ ଓ ପୁରୁଷମାନଙ୍କୁ ନାରୀମାନଙ୍କର କୁପ୍ରଭାବରୁ ଦୂରେଇ ରଖିବା ପାଇଁ ଚାହୁଁଥିଲେ । ଚରିତ୍ରର ବିକାଶଦୃଷ୍ଟିରୁ ପାରିବାରିକ ମୋହମାୟାର ବଂଧନକୁ ମଧ୍ୟ ସେମାନେ କ୍ଷତିକାରକ ମନେକରୁଥିଲେ । ରାଜା ସଲବାନ ମଧ୍ୟ ନିଜେ ନାଥ-ଯୋଗୀମାନଙ୍କର ଭକ୍ତ ଥିଲେ । ଫଳରେ ପୂରନ ଜନ୍ମ ହେବା ସମୟରେ ସ୍ଥିର ହେଲା ଯେ ତାକୁ ଜୀବନର ପ୍ରଥମ ବାରଟି ବର୍ଷ ପରିବାରଠାରୁ ଦୂରେଇ ରଖାହେବ ଓ ଅତ୍ୟଂତ ସଂଯମର ସହିତ ତା'ର ଲାଳନପାଳନ କରାଯିବ । ଏହା ତା'ର ମାନସିକ ବିକାଶ ପାଇଁ ହିତକର ହେବ । କଠୋର ନିର୍ଣ୍ଣୟ ହେଲେ ସୁଦ୍ଧା ପୁଅର ମଙ୍ଗଳଦୃଷ୍ଟିରୁ ରାଜା ଛାତିକୁ ପଥର କରିନେଲେ ଓ

"ପୂରନ ଇକ ହନେରିୟୋଁ ବାହର ଆୟା,
ଦୂଜୋ କୋଠଡ଼ୀ ଦେ ବିଚ୍ଚ ପା ଦିତ୍ତା ।
କାଦର ୟାର ମୋୟାଁ ପୂରନ ଭଗତ ତାଈ,
ବାପ ଜମ୍ମଦିୟାଁ କୈଦ କରା ଦିତ୍ତା ।"

ଅର୍ଥାତ୍, ପୂରନ ଗୋଟାଏ ଅନ୍ଧାରରୁ ନ ବାହାରୁଣୁ ତାକୁ ଅନ୍ୟ ଏକ ଅନ୍ଧାର ଭିତରକୁ ଠେଲିଦିଆଗଲା । ତାକୁ ତା'ର ପିତା ଜନ୍ମହେବା ସଙ୍ଗେ ସଙ୍ଗେ କାରାରୁଦ୍ଧ କରାଇ-ଦେଲେ ।

ନାଥ-ଯୋଗୀମାନଂକର ମତ ଅନୁଯାୟୀ ଏହି ପଦକ୍ଷେପ ଉଚିତ ଥିଲା । କିଂତୁ ଯୋଗୀମାନଂକର ସାଧନା ପ୍ରକୃତିର ନିୟମକୁ ଅବମାନନା କରେ । ମା' ପୁଅ

ପରସ୍ପରଠାରୁ ଅଲଗା ରହିଲେ ସେମାନଂକ ଭିତରେ ସାଧାରଣ ସ୍ତ୍ରୀ ପୁରୁଷର ସଂପର୍କ ବ୍ୟତୀତ ଅନ୍ୟ କୌଣସି ସଂପର୍କ ରହିବ ନାହିଁ । ମନକୁ ଦମନ କରି ଯାହା ପାଖରୁ ଜୋର୍ କରି ବିମୁଖ କରିବାକୁ ଚେଷ୍ଟା କରାଯାଏ, ମନ ସେଇ ଦିଗରେ ବେଶି ଆକର୍ଷିତ ହୋଇଥାଏ । ସାଲବାନ ନିଜ ପୁଅକୁ ମା'ଠାରୁ ଅଲଗା କରିଦେଲେ କ'ଣ ହେଲା; ସେ ନିଜେ ଆଉ ଥରେ ବିବାହ କଲେ । ରାଜାଙ୍କର ଆୟୁ ଖୁବ୍ ଅଧିକ ହେଲେ ସୁଦ୍ଧା ନବବିବାହିତା ପତ୍ନୀ ଯୁବତୀ ଥିଲା । ଫଳରେ ଯେମିତି ହେବା କଥା ତା' ହେଲା । ରାଜା ନିଜର ନୂତନ ପତ୍ନୀର ବଶବର୍ତ୍ତୀ ହୋଇ ରହିଲେ ।

"ଜୋମ ଜାଏ ରାଜେ ସଲବାନ ଆଂଦା,
ଇକ ସ୍ତ୍ରୀ ହୋର ବିଆହି କେ ଙ୍ଗା ।
ଓହି ଙ୍ଗା ଜାତ ଚମିୟାରେ ତେ ନାଁ ଲୁଣାଁ,
ଘର ଆଇ ସେ ଇନ ମନା କେ ଜୋ ।"

( ରାଜା ସଲବାନ ଆଉ ଏକ ନାରୀକୁ ବାହା ହୋଇ ନେଇଆସିଲେ; ଯିଏ ମୋଚି ଜାତି ସହିତ ସମ୍ପର୍କିତ ଥିଲା ଓ ଯାହାର ନାମ ଥିଲା ଲୁଣାଁ; ଯିଏ ନିଜ କଥା ଭିତିଲା ପରେ ଯାଇ ରାଜାଂକ ଘରେ ପାଦ ଦେଲା । )

ପୂରନ ପରିବାରଠାରୁ ଦୂରରେ ବଢ଼ିବାକୁ ଲାଗିଲା ଓ ସଲବାନ ନୂତନ ପତ୍ନୀକୁ ନେଇ ସୁଖରେ ମାତିରହିଲେ । ପିତା ପୁତ୍ର ମଧ୍ୟ ଶ୍ରଦ୍ଧା ଓ ସମ୍ମାନର ସମ୍ପର୍କ ରହିଲା ନାହିଁ । ଉଭୟେ ପରସ୍ପର ପ୍ରତି ଅଜଣା ଥିଲେ । ଉଭୟଙ୍କର ରୁଚି ମଧ୍ୟ ଭିନ୍ନ ଥିଲା । ପୂରନ ବାରବର୍ଷ ପରେ କାରାଗାରର ବାହାରକୁ ଆସିଲା । ସର୍ବପ୍ରଥମେ ସେ ନିଜ ପିତାଂକର ଦରବାରକୁ ଯାଇ ତାଂକୁ ପ୍ରଣାମ କଲା । ଦୀର୍ଘ ସମୟର ବିରତି ପରେ ବାପ ପୁଅଂକର ମିଳନ ହୋଇଥିଲା । ଉଭୟେ ନିଜ ନିଜର ସ୍ଥାନରୁ ଆପଣାର ପରିଚୟ ଦେବାକୁ ଲାଗିଲେ । ସ୍ତ୍ରୀ-ସୁଖରେ ପାଗଳ ରାଜା କହିଉଠିଲେ, "ମୋ ପୁଅର ଆଜ ବିବାହ ହୋଇଯିବା ଉଚିତ ।" କିଂତୁ ସତ୍ୟ ଓ ଧର୍ମର ଜ୍ଞାନ ପ୍ରତି ଦୃଢ଼ ଆସ୍ଥାବାନ୍ ପୂରନ କହିଲା, "ବିବାହ-ବଂଧନରେ ବାଂଧିଦେଇ ମୋତେ ପରମାତ୍ମାଂକଠାରୁ ଦୂରେଇ ଦିଅନା ।" ଭକ୍ତ ଏବଂ ସଂସାରୀ ଲୋକର ମେଳ ଖାଇବା ସହଜ କଥା ନୁହେଁ । ଜୀବନର ଦୁଇଟି ଭିନ୍ନମୁଖୀ ଉଦ୍ଦେଶ୍ୟ ମୁହାଁମୁହିଁ ହେଲେ ।

"ଦାଲ୍ ଦସଦା ପୁଚ୍ଛଦା ଲାଗୀସ୍ଁା ନୂଁ
ସଲବାନ ରାଜା ଉତ୍ତ୍ଥେ ଗଜ୍ଜ କେ ଜୋ ।
ପୂରନ ଭଗତ ଦା ଢୁଂଢଣା ଆଂଓ କୋଇ,
ଜତ୍ଥେ ଚଲ୍ ଠକୁର୍କାଂ ଭଜ ଅଜ୍ଜ ଦେ ଜୋ ।
ଜାଲ୍ ଜର୍ ନା ସଂଗଦା ବାପ କୋଲ୍ଲେ,
କୈହିଦା ବାବଲା ପୁତ୍ତ ବିଆହି ନାହିଁ ।

ଜେହଡ଼େ ଶୌକ ନାଲ ଲେକ ବ୍ୟାହ କରଦେ,
ଅଜେ ଓହ ମେରେ ମନ ନୂ ଭାହିଁ ।
ମେରା ଭୌର ସୈଲାନୀ ହୈ ନଚ୍ଚତ ରେଂହଦା,
ଜନ ବାବଲ୍ ବେଢ଼ସୁଁା ପା ନାହିଁ ।
କାଦର ଯ୍ୟାର ଆଖେ ପୂରନ ବାପ ତାଈ,
ମୈତ୍ଥୋଁ ରବ୍ବ ଦା ନାଁ ଭୁଲ ନାହିଁ ।"

ରାଜଦରବାରରେ ରାଜା ପିତା ଓ ଭକ୍ତ ପୁତ୍ର ମଧ୍ୟରେ ସତେ ଯେମିତି ଯୁଦ୍ଧ ଆରଂଭ ହୋଇଗଲା । ରାଜା ନିଜ ଆଦେଶର ଅବମାନନା କଥା ଶୁଣିବା ପାଇଁ ଅଭ୍ୟସ୍ତ ନଥିଲେ । ଏପରିକି ନିଜେ ମଂତ୍ରୀ ମଧ୍ୟ ଡରିଗଲେ ଯେ କାଳେ ରାଜା ନିଜ ପୁତ୍ରର ବିରୁଦ୍ଧରେ କୌଣସି ଆଦେଶ ଶୁଣେଇଦେବେ । ସେ ରାଜକୁମାରଂକ ଶିଶୁସୁଲଭ ସରଳ ସ୍ୱଭାବ କଥା ଆରଂଭ କରି ରାଜାଂକୁ ଶାଂତ କରାଇଦେଲେ । ରାଜା କେତେଜଣ ପରିଚାରକଂକ ସହିତ ପୂରନକୁ ପଠାଇ ଆଦେଶ ଦେଲେ ଯେ ସେ ଯାଇ ନିଜର ମା'ମାନଂକର ଚରଣବଂଦନା କରୁ ।

ଯୋଗଶିକ୍ଷାରେ ପ୍ରବୀଣ ପୂରନକୁ ନା ରାଜଦରବାରର ନିୟମ ଜଣାଥିଲା, ନା ସେ ରାଜମହଲର ଆଚାର-ବ୍ୟବହାର ସହିତ ପରିଚିତ ଥିଲା । ସର୍ବପ୍ରଥମ ମହଲ ଥିଲା ସାବତ-ମାଆ ଲୁଣାଁର । ସେ ଦୈହିକ ସୁଖ ବ୍ୟତୀତ ଗୃହସ୍ଥ ଜୀବନର ଅନ୍ୟ କୌଣସି ଦିଗ ପ୍ରତି ଅବହିତ ନଥିଲା । ଏପର୍ଯ୍ୟଂତ ତା'ର କୋଳ ଶୂନ୍ୟ ଥିଲା । ସ୍ୱାମୀଂକର ପ୍ରେମ-ପ୍ରୀତି ଛଡ଼ା ସେ ଆଉ କିଛି ଦେଖିବାର ସୁଯୋଗ ପାଇନଥିଲା । ଏଯାଏ ତା'ର ପ୍ରାସାଦରେ ନିଜ ସ୍ୱାମୀ ବ୍ୟତୀତ ଅନ୍ୟ କୌଣସି ପୁରୁଷର ପାଦ ପଡ଼ିନଥିଲା । ତା'ପାଇଁ ବୋଧହୁଏ ସବୁ ପୁରୁଷ ଥିଲେ ଏକାପ୍ରକାରର । ସେ ପାଠଶାଠ ମଧ୍ୟ ବେଶି ପଢ଼ିନଥିଲା । ତା'ର ଧର୍ମକର୍ମର ଜ୍ଞାନ ମଧ୍ୟ ଥିଲା ଖୁବ୍ ଅଳ୍ପ । ସେ ରାଜକୁମାରକୁ ଦେଖି ରୋମାଂଚିତ ହୋଇପଡ଼ିଲା । ପୂରନର ମା' ଡାକ ଶୁଣି ତାର ଦେହ ଥରିଉଠିଲା । ସେ ତ ଏପର୍ଯ୍ୟଂତ ମା' ହୋଇ ପାରିନଥିଲା; ସଉତୁଣୀର ପୁଅକୁ ଅବା ସେ କେମିତି ପୁଅ ବୋଲି ମାନିନଅଂତା । ପୂରନର ତା' ପ୍ରତି ମା' ସଂବୋଧନ ଅତ୍ୟଂତ କଟୁକର ବୋଧହେଲା । ତା'ର ମନେହେଲା ସତେ ଯେମିତି ବିଧାତା ତାକୁ ପରିହାସ କରୁଛି ।

ଲୁଣାଁ ତ ମୂଳରୁ ରାଜାଂକୁ ମଧ୍ୟ ଆଦେଶ ଦେବାରେ ଅଭ୍ୟସ୍ତ ଥିଲା । ସେ ନିଜର ଅଂତରର କଥା ଖୋଲି କହିଲା :

"ଜୋଏ ଜାହର୍ ଆଖଦୀ ଶର୍ମ କେହୋ,
ମାଈ ମାଈ ନା ରାଜ୍ୟା ଆଖ ମୈନୂଁ ।
କୁବ୍ବୋଁ ରଖ୍ଖ ନା ଜମିସ୍ୟୋ ଜାଇସ୍ୟୋ ବେ,
ମାଈ ଆଖଦା ଏଁ କେହ୍ଡ଼େ ସାକ ମୈଂନୂଁ ।"

ପୂରନ ଓ ଲୁଣା ଦୁଇଜଣଯାକ ଭିନ୍ନ ଭିନ୍ନ ମତ ପ୍ରକାଶ କରୁଥିଲେ—ଜଣକପାଇଁ ଭୋଗବିଳାସ ଥିଲା ଜୀବନର ଆରଂଭ ଓ ଶେଷ; ଅନ୍ୟ ଜଣକ ପାଇଁ ଜୀବନର ଏକମାତ୍ର ଲକ୍ଷ୍ୟ ଥିଲା ଯୋଗ । ଦୁ'ଜଣଯାକ ଏକ ଆରେକର ମତକୁ ହୃଦୟଂଗମ କରିବାପାଇଁ ଅକ୍ଷମ ଥିଲେ । ପ୍ରକୃତରେ ରାଜପ୍ରାସାଦର ଚାଲିଚଳନ ପୂରନ ଓ ଲୁଣାଁ ଉଭୟଙ୍କୁ ଜୀବନର ବାସ୍ତବତାଠାରୁ ଦୂରେଇ ଦେଇଥିଲା । ଜୀବନଠାରୁ ବିଚ୍ଛିନ୍ନ ଦୁଇଟି ପ୍ରାଣୀ ପରସ୍ପରକୁ ଅଜଣା ଅଶୁଣା ଅପରିଚିତ ବ୍ୟକ୍ତି ଭଳି ବ୍ୟବହାର କରୁଥିଲେ । ପୂରନ କହିଲା—

"କସବୀ ସ୍ତ୍ରୀ ନୂଁ ଓହ ଦେି ବାପ ମେରା,
ତେରେ ଶିକମ ହୋ ଜମିୟାଁ ଜାନ ମାଏ୍ୱ ।"

ଏ କଥା ଶୁଣି ଲୁଣାଁର ପ୍ରେମ ହଁ।ଂକୁରି ଉଠିଲା । ପୂରନର ଅସ୍ତିତ୍ୱ ତାକୁ ବିଷଭଳି ମନେହେଉଥିଲା । ପୁଣି ପର ମୁହୂର୍ତ୍ତରେ ସେ ତାକୁ ଅତି ପ୍ରିୟ ମନେହେଉଥିଲା । ଲୁଣାଁ ପୂରନକୁ ପାଇବାପାଇଁ କାମନା କରୁଥିଲା ଓ ଏଥିରେ ବିଫଳ ହେଲେ ତା'ର ପ୍ରାଣ ନେବା ପାଇଁ ପ୍ରସ୍ତୁତ ହୋଇସାରିଥିଲା । ସେ ଏକାଥରକରେ ନିଜର ପ୍ରେମ ଓ ଘୃଣା ଉଭୟ ପ୍ରକଟ କରି କହିଲା :

"କାଂଙ୍ଗ କଲ୍ଲ କରାଉଁଗୀ ପୂରଣା ବେ,
ଆଖେ ଲଗ ଜା ଦେ ଭଲା ଚାହୁଁନା ଏଁ ।
ଖୋଲ୍ ଅଡ୍ଡ କେ ଖଡ଼ୀ ମୈ ପାସ ତେରେ,
ହୈସ ଆରିୟା ଖୈର ନା ପାଉନା ଏଁ ।"

ଲୁଣାଁ ସ୍ପଷ୍ଟଭାବରେ ଶୁଣାଇଦେଲା ଯେ ଯଦି ପୂରନ ପାଇଁ ତା'ର ଜୀବନ ପ୍ରିୟ ହୋଇଥାଏ, ତା'ହେଲେ ସେ ତା'ର ଇଚ୍ଛାନୁଯାୟୀ କାର୍ଯ୍ୟ କରୁ; ନଚେତ୍ ସେ ନିଜର ଜୀବନକୁ ବାଜି ଲଗାଇଦେଉ । କିନ୍ତୁ ପୂରନ ପାଇଁ ନିଜର ଦେହ ଅପେକ୍ଷା ନିଜର ଧର୍ମ ଥିଲା ଅଧିକ ପ୍ରିୟ । ସେ ପଥଭ୍ରଷ୍ଟ ନ ହୋଇ ଧର୍ମର ମାର୍ଗରେ ଜୀବନ ଅତିବାହିତ କରିବାକୁ ଚାହୁଁଥିଲା ।

"ଅଖାଁ ପରତ କେ ନଜର ନ ମୂଲ କରସାଁ,
ଏପର ସୂଲୀ ତେ ଚଢ଼ନ କବୂଲ କରସାଁ ।
କନ୍ନୀ ଖିଚ୍ଚ କେ ଅଂଦରୋଂ ବାହର ଆୟା,
ଆଖେ ଧର୍ମ ଗବାଏ କେ ନାହିଁ ମରସାଁ ।"

ସର୍ବପ୍ରଥମେ ଯିଏ ଧର୍ମ ସହିତ ମୃତ୍ୟୁକୁ ସମ୍ପର୍କିତ କରିଥିଲା, ସେ ନିଶ୍ଚିତ ଭାବରେ ଏକ ଦୂରଦୃଷ୍ଟିସଂପନ୍ନ ବ୍ୟକ୍ତି ହୋଇଥିବ । ଧର୍ମର ପଥରେ ଯଦି ମୃତ୍ୟୁ ନ ଆସେ, ତା'ହେଲେ ଧର୍ମ ଅହଂକାରୀ ଓ ଗର୍ବୀ ହୋଇଉଠେ । ଯେଉଁ ରାଜପ୍ରାସାଦରୁ ପୂରନ ନାସ୍ତିସୂଚକ ଉତ୍ତର ଦେଇ ବାହାରିଆସିଥିଲା, ସେଇଠାରୁ ହିଁ ତାକୁ ମୃତ୍ୟୁ-ଦଂଡ ମିଳିଲା । ଲୁଣାଁକୁ ଛାଡ଼ି ପୂରନ

ଐଶ୍ୱର୍ଯ୍ୟ ମହଲରୁ ବାହୁଡ଼ିଆସିବା ପରେ ରାଜାଂକର ପ୍ରିୟତମା ଲୁଣାଁ ନିଜର ଶୃଂଗାର ଅଳଂକାର ସବୁ କାଢ଼ି ଫିଙ୍ଗି ଦେଲା ଓ ଛିଂଡା ମଇଳା ବସ୍ତ୍ର ପିଂଧିଲା । ରାତିହେଲା ପରେ କଳାପ୍ରିୟ ରାଜା ମହଲକୁ ଆସିଲେ । ରାଜମହଲର ଅଜବ ପରିସ୍ଥିତି ଦେଖି ସେ ବିସ୍ମିତ ହେଲେ । ପ୍ରାସାଦରେ ଏପର୍ଯ୍ୟଂତ ଆଲୁଅ ଜଳିନଥିଲା ଓ ଲୁଣା ଅଂଧକାରାଚ୍ଛନ୍ନ କୋଠରି ଭିତରେ ଶୋଇରହିଥାଏ । ତାର ପରିଧେୟ ବସ୍ତ୍ର ଓ ଅଳଂକାରମାନ ଚାରିଆଡ଼େ ବିଞ୍ଚେଇ ହୋଇ ପଡ଼ିଥାଏ । ରାଜା ରାଣୀଙ୍କୁ ଏ ସବୁର କାରଣ ପଚାରିବା କ୍ଷଣି ଲୁଣାଁ କଇଁକଇଁ ହୋଇ କାଂଦିବାକୁ ଲାଗିଲା । ସେ ରାଜାଂକୁ ନିଜର ଭଂଗା ଚୂଡ଼ି ଓ ଚିରାଯାଇଥିବା ଉତ୍ତରୀୟଟିକୁ ଦେଖାଇଲା । ତାପରେ ସେ ଯେମିତି ପୂରନର ନାମରେ କହିବାକୁ ଆରଂଭ କରିଛି, ରାଜା ରାଗରେ ଥରିଉଠିଲେ । ରାଜଦରବାରରେ ମଧ୍ୟ ପୂଅର କଥାବାର୍ତ୍ତା ରାଜାଂକୁ ଭଲ ଲାଗିନଥିଲା । କେବଳ ରାଜମହଲରେ ନୁହେଁ; ରାଜାଂକର ମନଭିତରେ ମଧ୍ୟ ଅଂଧକାର ବ୍ୟାପିଗଲା । ବାହାରେ ଭିତରେ କେଉଁଠାରେ ମଧ୍ୟ ତାଂକୁ ସାମାନ୍ୟ ଆଲୋକ ଦେଖାଯାଉନଥିଲା । ସେ ସେଇକ୍ଷଣି ଜହ୍ଲାଦମାନଂକୁ ଡକାଇଲେ ଓ ଅଂଧକାରାଚ୍ଛନ୍ନ ପ୍ରାସାଦରେ ବସିକରି ପୂଅର ମୃତ୍ୟୁଦଂଡ ଶୁଣାଇଦେଲେ । ଧନର ପ୍ରାଚୁର୍ଯ୍ୟ ଓ ଅହଂକାରର ସଂପର୍କ ଅତି ନିବିଡ଼ । ରାଜା ପୂରନକୁ ହତ୍ୟା କରାଇ ନିଜର ପ୍ରାଚୁର୍ଯ୍ୟର ପରିପାଟୀକୁ ବଜାୟ ରଖିବା ପାଇଁ ଚାହିଁଥିଲେ ।

ପ୍ରଭାତର ଆକାଶରେ ହତ୍ୟାକାରୀ ସୂର୍ଯ୍ୟ ଉଦୟ ହେଲା । ସୂର୍ଯ୍ୟଂକର ତର୍ପଣ କରୁ କରୁ ରାଜପୁରୋହିତଂକର ହାତ ମଧ୍ୟ ଥରିଉଠିଲା । ବଜାର ବଂଦ ଥିଲା । ଲୋକେ ନିଜନିଜର ଝରକା କବାଟ କିଳିଦେଲେ । ପୂରନ ଜନଶୂନ୍ୟ ଗଳି ବଜାର ଦେଇ ମୃତ୍ୟୁ ନିକଟକୁ ଆଗେଇଯାଉଥିଲା । ସବା ଆଗରେ ନୀରବ ନିର୍ଭୀକ ପୂରନ; ପଛରେ ଭୟଭୀତ ଜହ୍ଲାଦ ଓ ତାଂକ ପଛରେ ଖାଲିପାଦ, ଖୋଲାମୁଣ୍ଡରେ ବିଳାପରତା ମା' ଇଚ୍ଛରାଁ । ସାରା ସହରରେ ପ୍ରତିବାଦର ସ୍ୱର ଉତ୍ତୋଳନ କରିବା ପାଇଁ କେହି ହେଲେ ଜଣେ ନଥିଲେ । ରାଜତଂତ୍ର ଶାସନରେ ସମସ୍ତେ ପାଟି ବନ୍ଦ କରିବାପାଇଁ ବାଧ୍ୟ ହୋଇଥାଆନ୍ତି ।

ରାଜା ପୂରନକୁ ନିର୍ମମ ଯଂତ୍ରଣାରେ ତହଳ-ବିକଳ କରି ହତ୍ୟା କରିବା ପାଇଁ ଆଦେଶ ଦେଇଥିଲେ । ତା'ର ହାତମାନ କାଟିନେଇ ତାକୁ କୂଅଭିତରେ ଝୁଲାଇ ଦେବାପାଇଁ ନିର୍ଦ୍ଦେଶ ଦେଇଥିଲେ । ଏହାଦ୍ୱାରା ଯିଏ ତାକୁ ଦେଖିବ, ତାକୁ ଶିକ୍ଷା ମିଳିବ; ଆଉ ମଧ୍ୟ ପୂରନ ବେଦନାରେ ଜର୍ଜରିତ ହୋଇ ମରିବ । ରାଜା କେବଳ ଦଂଡ ଦେଉନଥିଲେ; ଦଂଡ ଦେବାଦ୍ୱାରା ସେ ମନୋରଂଜନ ମଧ୍ୟ ଲାଭ କରୁଥିଲେ । ଯେତେ ବେଶି କଷ୍ଟ ଦିଆଯାଉଥିଲା, ସେ ସେତେ ଅଧିକ ଖୁସି ହେଉଥିଲେ । ଘାତକମାନେ ଫେରିଆସି ରାଜାଂକୁ ତାଂକର ଆଦେଶ ସୂତ୍ରୁ ରୂପେ ପାଳନ ହୋଇଥିବା କଥା ଜଣାଇଦେଲେ । ସେମାନେ ଜଣାଇଦେଲେ ଯେ ପୂରନର ଶରୀରରୁ ତା'ର ହାତଯୋଡ଼ା କାଟିନେଇ ତାକୁ ଏକ ନିର୍ଜନ ସ୍ଥାନରେ କୂଅ ଭିତରେ ଝୁଲାଇ ଦିଆଯାଇଛି । ସାରା ସହର ଦୁଃଖରେ ହାହାକାରମୟ

ହୋଇଉଠିଲା । କିଂତୁ ପୂରନର ଜୀବନରକ୍ଷା କରିବାପାଇଁ କାହାର ପାଖରେ ଶକ୍ତି ନଥିଲା । ବୋଧହୁଏ ସେଇଥିପାଇଁ ଯନ୍ତ୍ରଣାରେ ଛଟପଟ ହେଉଥିବା ମୁମୂର୍ଷୁ ପୂରନକୁ ଦେଖିବା ପାଇଁ କେହି ହେଲେ ଯାଇନଥିଲେ । ପୂରନର ଭାଗ୍ୟରେ ଥିଲା ପ୍ରଥମେ ମା'ର ଗର୍ଭ, ତା'ପରେ ପିତୃଦତ୍ତ ଅନ୍ଧକାରମୟ କାରାଗାର ଓ ଏବେ ବିମାତାର କୃପାରୁ ଲାଭ କରୁଥିବା କୂଅ । ଗୋଟାକ ପରେ ଆଉ ଗୋଟାଏ ଅଂଧାର । ତୃତୀୟ ଥର ପାଇଁ ଲାଭ କରିଥିବା ଅଂଧାର ପୂରନର ମନ ଭିତରେ ଜଳୁଥିବା ଜ୍ୟୋତିକୁ ଆହୁରି ପ୍ରଜ୍ୱଳିତ କରିଦେଲା ।

କିଛି ସମୟ ଅତିବାହିତ ହେଲା ପରେ ନାଥଯୋଗୀମାନେ ଆସି ସେଇ କୂଅ ନିକଟରେ ଆଶ୍ରୟ ନେଲେ । ବର୍ଷ-ବର୍ଷଧରି ଅବ୍ୟବହୃତ କୂଅର ଦୁର୍ଗନ୍ଧମୟ ପାଣିକୁ ପରିଷ୍କାର କରିବାକୁ ଗଲାବେଳେ ମନେହେଲା କୂଅଟି ଯେମିତି ମଣିଷପରି କଥା କହୁଛି । ସୌଭାଗ୍ୟକ୍ରମେ ଏତେ ସମୟ ପରେ କେହି ଜଣେ ପୂରନର ଠାବ ପାଇଲା । ପ୍ରଥମେ ଯୋଗୀମାନେ ଭୟଭୀତ ହୋଇପଡ଼ିଲେ । ସେମାନଂକର ମନେହେଲା, ଯେମିତି ତାହା କୂଅ ନୁହେଁ; ଭୂତଂକ ବସା । କିଂତୁ ଦଳର ନେତା ଗୁରୁ ଗୋରଖନାଥ ଭଲଭାବରେ ଦେଖିଲେ । ଭିତରେ ଭୂତ ନୁହେଁ, ମଣିଷଟିଏ ଝୁଲୁଥିଲା । ଗୁରୁଂକଠାରୁ ଆଦେଶ ପାଇଁ ଯୋଗୀମାନେ ଝୁଲୁଥିବା ଲୋକଟିକୁ ପଦାକୁ କାଢ଼ିଲେ । ଲୋକେ କହଂତି, ତା'ର ହାତଗୋଡ଼ ସବୁ ଯେମିତିକ ସେମିତି ଥିଲା । ସେ କ'ଣ ଗୁରୁଂକର କୃପାରୁ ହାତମାନ ପୁଣି ଫେରପାଇଥିଲା ? ନା ଘାତକମାନେ ଠିକ୍-ଭାବରେ ରାଜାଂକର ଆଦେଶ ପାଳନ କରିନଥିଲେ ? ପୂରନ ପାଇଁ ତ କେବଳ ହାତ ନୁହେଁ, ସଂପୂର୍ଣ୍ଣ ଶରୀର ବିକଳାଂଗ ହୋଇସାରିଥିଲା । ତାକୁ ତା' ନିଜର ଶରୀର ନିର୍ଜୀବ ଓ ଦୁର୍ଗନ୍ଧମୟ ପାଣି ପରି ଅସାର ମନେହେଉଥିଲା । ସେ ତା'ର ଶରୀରକୁ କେବେହେଲେ କୌଣସି କାର୍ଯ୍ୟରେ ଲଗାଇ ନଥିଲା । କୂଅରୁ ବାହାରିବାପରେ ସେ ଗୁରୁ ଗୋରଖନାଥଂକର ପାଦତଳେ ଲୋଟିଗଲା ଓ ତାଂକୁ ଦୀକ୍ଷା ପ୍ରଦାନ କରିବାପାଇଁ ଅନୁନୟ କଲା ।

ଗୁରୁ କାହାରକୁ ସହଜରେ ଦୀକ୍ଷା ଦେଉନଥିଲେ । ପ୍ରଥମେ ଶିଷ୍ୟର ପରୀକ୍ଷା ନିଆଯାଉଥିଲା । କିଂତୁ ପୂରନ ତ ଆଗରୁ ବହୁତ ବଡ଼ ପରୀକ୍ଷା ଦେଇସାରିଥିଲା । ତା' ପାଇଁ ପିତାମାତା ଓ ସାଂସାରିକ ମୋହମାୟାର ସମସ୍ତ ବଂଧନ ଓ ସଂପର୍କ ଛିନ୍ନ ହୋଇସାରିଥିଲା । ଗୁରୁ ତାକୁ ଦୀକ୍ଷା ଦେଇଦେଲେ । ପୂରନର କାନ ଭିଣା କରି ବଳା ପିନ୍ଧାଇଦିଆଗଲା । କିଂତୁ ଏ ପର୍ଯ୍ୟଂତ ଆହୁରି ଏକ ପରୀକ୍ଷା ବାକୀ ଥିଲା । କାମୁକା ସ୍ତ୍ରୀର ହାତୁଡ଼ରୁ ଖସିଆସିଥିଲେ ସୁଦ୍ଧା ପ୍ରେମିକାର ପ୍ରେମପାଶରୁ ସେ ଏପର୍ଯ୍ୟଂତ ମୁକୁଳି ନଥିଲା ।

ପରଦିନ କାଂଧରେ ଝୁଲି ଝୁଲାଇ ପୂରନ ଭିକ୍ଷା ସଂଗ୍ରହ କରିବା ଉଦ୍ଦେଶ୍ୟରେ ପାଖ ସହରକୁ ବାହାରିଲା । ଗୋଟାଏ ପଟେ ତା'ର ପିତାଂକର ସହର ଥିଲା ଓ ସେପଟକୁ ଯିବାପାଇଁ ପୂରନର ବାଟ ନଥିଲା । ଅନ୍ୟପଟେ ରାଣୀ ସୁଂଦରାଁର ରାଜ୍ୟ ଥିଲା । ସେଇଠି ସଂପୂର୍ଣ୍ଣ ରାଜକୀୟ ବ୍ୟବସ୍ଥାର ଭାର ସ୍ତ୍ରୀମାନଂକ ହାତରେ ନ୍ୟସ୍ତ ଥିଲା । ପୂରନ ପ୍ରଥମରୁ ଜଣେ ନାରୀର ଷଡ଼ଯଂତ୍ରର ଶିକାର ହୋଇସାରିଥିଲା; କିଂତୁ ତା'ର ଭିକ୍ଷା ସଂଗ୍ରହ ନିତାଂତ

ଆବଶ୍ୟକ ଥିଲା । ପିତାଙ୍କର ସହରକୁ ଯିବା ଅପେକ୍ଷା ସେ ଅଜଣା ସ୍ତ୍ରୀମାନଙ୍କର ସହରକୁ ଯିବା ଶ୍ରେୟସ୍କର ବିବେଚନା କଲା । ପ୍ରତ୍ୟେକ ନାରୀ ଯୋଗୀମାନଙ୍କ ପାଇଁ ଗୋଟାଏ ଗୋଟାଏ ପରୀକ୍ଷା ।

ରାଣୀ ସୁନ୍ଦରୀ ଅତ୍ୟନ୍ତ ରୂପବତୀ ଯୁବତୀ ଥିଲା; କିନ୍ତୁ ନିଜର ରୂପ ଓ ଯୌବନ ଅପେକ୍ଷା ସେ ନିଜର ସତ୍ୟ ପାଇଁ ବେଶି ଗର୍ବ କରୁଥିଲା । ପୂରନ ରାଣୀ ସୁନ୍ଦରୀର ରାଜଦରବାରକୁ ଯାଇ ନିଜର ଆଗମନର ସୂଚନା ଦେଲା । ପୂରନ ଓ ରାଣୀ ସୁନ୍ଦରୀ ଉଭୟଙ୍କ ପାଇଁ ପରୀକ୍ଷାର ମୁହୂର୍ତ୍ତ ପାଖେଇ ଆସିଲା । ରାଣୀର ଦାସୀମାନେ ଭିକ୍ଷା ଦେବାକୁ ଯାଇ ପୂରନର ସୁନ୍ଦର ରୂପ ଦେଖି ଆଚମ୍ବିତ ହୋଇପଡ଼ିଲେ । ସେମାନେ ବିସ୍ମିତ-ନୟନରେ ଫେରିଆସି ରାଣୀକୁ ଜଣାଇଲେ ଯେ ଏମିତି ରୂପବାନ୍ ଯୋଗୀକୁ ରାଣୀ ନିଜ ହାତରେ ଭିକ୍ଷା ଦେବା ଉଚିତ । ବୋଧହୁଏ ଦୀର୍ଘକାଳ ସଂଯମୀ ଜୀବନ ଅତିବାହିତ କଲାପରେ ଦାସୀମାନେ ଅତିଷ୍ଠ ହୋଇସାରିଥିଲେ । ରାଣୀ ସୁନ୍ଦରୀ ବୁଝିପାରିଲା ଯେ ଦାସୀମାନେ ତା'ର ଧର୍ମର ପରୀକ୍ଷା ନେବାକୁ ଚାହୁଁଛନ୍ତି । ସେ ମହଲ ଉପରୁ ତଳେ ଛିଡ଼ାହୋଇଥିବା ଯୋଗୀକୁ ଦେଖିଲା । ପୂରନକୁ ଦେଖି ତା'ର ଆଖି ଝଲସିଗଲା । ସେ ହାତରେ ହୀରାମୋତିର ଥାଳି ନେଇ ନିଜେ ଦରବାରରେ ଉପସ୍ଥିତ ହେଲା । ଯୋଗୀ ନା ରାଣୀ ଆଡ଼କୁ ମୁହଁ ଉଠାଇ ଦେଖିଲା, ନା ହୀରାମୋତିଭରା ଥାଳିକୁ । ରାଣୀ ଯାହା କିଛି ତା' ଅର୍ଲୀରେ ପକାଇଦେଲା ତାକୁ ନେଇ ସେ ନିଜର ଆସ୍ଥାନକୁ ଫେରିଆସିଲା । ଗୁରୁ ହୀରା-ମୋତିର ଭିକ୍ଷା ଦେଖି କହିଲେ :

"ନୂନ ନହୀଁ ଏହ ଦୌଲତାଁ କମ୍ମ ସାଡେ,
ଗୁରାଁ ଆଖିୟା ମୋଡ଼ କେ ଆ ପୂତା ।
ଏଲ ଲୈତା ଫକୀରାଁ ଦା କମ୍ମ ନାହୀଁ,
ପକ୍କା ଭୋଜନ ଜା ମଂଗ ଲୟା ପୂତା ।"

ପୂରନ ପ୍ରଥମ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଗଲା । ଗୁରୁ ତାକୁ ଦ୍ୱିତୀୟ ଥର ପୁଣି ସେଇ ପରୀକ୍ଷାରେ ପକାଇଲେ । ପୂରନକୁ ଦିନକ ଭିତରେ ଦୁଇଥର ଆସିବା ଦେଖି ସୁନ୍ଦରୀ ଭାବିଲା ଯେ ତା'ର ରୂପ ଓ ଯୌବନର ଶର ଲକ୍ଷ୍ୟସ୍ଥଳକୁ ଭେଦକରିଛି । ସେ ଏବେ ନିଜର ବିଜୟ ଚାହୁଁଥିଲା । ପୂରନ ରନ୍ଧାହୋଇଥିବା ଖାଦ୍ୟ ପାଇଁ ଆଗ୍ରହ ପ୍ରକାଶ କରିବାରୁ ରାଣୀ ନାନାପ୍ରକାର ବ୍ୟଞ୍ଜନର ବ୍ୟବସ୍ଥା କଲା ଓ ଦାସୀମାନଙ୍କୁ ସାଙ୍ଗରେ ନେଇ ପୂରନ ସାଥିରେ ଗୁରୁଙ୍କର ଚରଣବନ୍ଦନା କରିବାପାଇଁ ବାହାରି ପଡ଼ିଲା । ବାଟସାରା ରାଣୀ ସୁନ୍ଦରୀର ଦୃଷ୍ଟି ପୂରନର ଯୁବକ ଶରୀର ଉପରେ ନିବଦ୍ଧ ଥାଏ; କିନ୍ତୁ ଗୁରୁଲଲବେଳେ ମଧ୍ୟ ପୂରନ ଅଟଳ ସମାଧିରେ ଲୀନ ଥିଲା ।

ଯୋଗୀମାନେ ରହୁଥିବା ପାହାଡ଼ ଉପରେ ପହଞ୍ଚି ସୁନ୍ଦରୀ ଯୋଗୀମାନଙ୍କୁ ଖାଇବାପାଇଁ

ହେଲ । ଅଲ୍ପାହାରୀ ସଂଯମୀ ଯୋଗୀମାନେ ସଂଘର୍ଷମୟ ଜୀବନର ଅନେକ ବର୍ଷପରେ ଏଭଳି ସ୍ୱାଦିଷ୍ଟ ଭୋଜନ ଗ୍ରହଣ କରିଥିଲେ । ତା' ପୁଣି ମନଇଚ୍ଛା ଖାଇବାକୁ ମିଳିଥିଲା । ସୁଂଦରୀଁର ସେବାରେ ପ୍ରସନ୍ନ ହୋଇ ଗୁରୁ ଗୋରଖନାଥ କହିଲେ, "ରାଣୀ, ଆମର ମନ ତୁମ ପ୍ରତି ପ୍ରସନ୍ନ ହେଉଛି । ଯଦି କିଛି ଚାହୁଁଛ, ମାଗିନିଅ ।" ରାଣୀ ମନଭିତରର ଉଦ୍‌ବେଳିତ ଝଡ଼କୁ ନିୟନ୍ତ୍ରଣ କରି କହିଲା, "ଗୁରୁଦେବ, ଈଶ୍ୱରଂକ କୃପାରୁ ସବୁକିଛି ଅଛି; ଆଉ କୌଣସି ବସ୍ତୁର ପ୍ରୟୋଜନ ନାହିଁ ।" କିଂତୁ ଗୁରୁ ପୁଣି କହିଲେ, "ସବୁ କିଛି ପ୍ରାପ୍ତ ହେଲା ପରେ ମଧ୍ୟ କୌଣସି ନା କୌଣସି ଇଚ୍ଛା ବାକୀ ରହିଯାଏ । ତୁମର କ'ଣ ଦରକାର କହ ?" ଏଥର ମନର ଇଚ୍ଛାକୁ ଦମନ କରିବା ରାଣୀ ପକ୍ଷରେ ଦୁଷ୍କର ହୋଇ ପଡ଼ିଲା; କିଂତୁ ରାଣୀ ନିଜ ଦାସୀମାନଂକ ଆଗରେ ଆପଣାର ସଂଯମୀ ଚରିତ୍ରକୁ ଅକ୍ଷୁର୍ଣ୍ଣ ରହିବାକୁ ଦେଲା ଓ କହିଲା, "ମହାରାଜ, ଆପଣ ତ ସର୍ବଜ୍ଞ । ଆପଣଂକୁ ସବୁ ଜଣା ଅଛି । ମୋ ଉପରେ ଦୟା କରଂତୁ ।" କିଛି ସମୟ ଭିତରେ ଦାସୀମାନେ ପାଖରୁ ହଟିଗଲେ । ଗୁରୁ ଗୋରଖନାଥ କହିଲେ, "ହାତରୁ ଅବସର ହରାଇଦେଲେ ଆଉ କିଛି ପାଇବାର ସୁଯୋଗ ଆସିବ ନାହିଁ । ମୁଁ ତୃତୀୟ ଥର ପାଇଁ ବଚନ ଦେଲି, ଯାହା ମାଗିବା କଥା ମାଗିନିଅ ।" ସୁଂଦରୀଁର ଧୈର୍ଯ୍ୟର ସୀମା ଭାଂଗିଗଲା । ସେ ତୁଂଡ ଫିଟାଇ କିଛି କହି ନପାରିଲେ ମଧ୍ୟ ନିଜର ଆଖିରେହିଁ ନିଜର ଇଚ୍ଛା ପ୍ରକାଶ କଲା—

"ରାନୀ ସୁଂଦରୀଁ ଉଠକେ ନଜର କୋତୋ,
ପୂରନ ଭଗତ ହେ ଅମୃତ ଫଲ ମେରା ।"

ଗୁରୁ ଗୋରଖନାଥ ପୂରନକୁ ଆଜ୍ଞା ଦେଇ ସୁଂଦରୀଁ ସହିତ ପଠାଇଦେଲେ । ଅଗ୍ନିଶିଖା ଭଳି ସୁଂଦରୀଁ ଓ ପ୍ରତିଚ୍ଛାୟା ଭଳି ପୂରନ ସାଥି ହୋଇ ଚାଲିଯାଉଥିଲେ । ନିଆଁ ଓ ପାଣିର ମିଳନ । ଉଭୟଂକ ପାଇଁ ପରୀକ୍ଷାର ମୁହୂର୍ତ୍ତ ଆସିଯାଇଥିଲା । ପୂରନ ଜାଣିଥିଲା ଯେ ଗୁରୁ ପୁଣି ଥରେ ତାକୁ ନିଆଁ ଭିତରକୁ ଠେଲିଦେଇଛଂତି ଓ ଏବେ ତାକୁ ପରଖିବାର ସମୟ ଆସିଯାଇଛି । ରାଜମହଲରେ ପହଂଚିବାକ୍ଷଣି ରାଣୀ ପୂରନକୁ ସିଂହାସନ ଉପରେ ବସାଇଦେଲା । ପୂରନର ମନେହେଲା, ସତେ ଯେମିତି ତାକୁ ଏକ କଂଟକମୟ ବିଛଣାରେ ବସାଇ ଦିଆଯାଇଛି । ପୂରନ ସିଂହାସନ ଛାଡ଼ି ଠିଆହୋଇପଡ଼ିଲା । ଏଥର ରାଣୀ ତାକୁ ବିଛଣା ଉପରେ ବସାଇଲା; କିଂତୁ ଶୋଇବା ପରିବର୍ତ୍ତେ ସେ ଧ୍ୟାନମଗ୍ନ ହୋଇ ସମାଧିରେ ଲୀନ ହୋଇଗଲା । ରାତିସାରା ସେ ଏକାଗ୍ର ଜ୍ୟୋତିଶିଖା ପରି ପ୍ରଜ୍ୱଳିତ ହେବାକୁ ଲାଗିଲା । ସୁଂଦରୀଁ ତା'ର ଉଦ୍ଦୀପ୍ତ ଓ ଉଜ୍ଜ୍ୱଳ ଶରୀରର ଚମତ୍କାରିତା ଦେଖୁଥାଏ । ପ୍ରଭାତ ସମୟରେ ପୂରନ ଶୌଚକ୍ରିୟା ଉଦ୍ଦେଶ୍ୟରେ ମହଲରୁ ବାହାରିପଡ଼ିଲା । ସୁଂଦରୀଁ ତାକୁ ନିଜେ ଅଟକାଇ ନପାରିଲେ ମଧ୍ୟ ଦାସୀମାନଂକୁ ତା' ସହିତ ପଠାଇଦେଲା । ଶୌଚକର୍ମରୁ ନିବୃତ୍ତ ହୋଇ ପୂରନ ମହଲ ଆଡ଼କୁ ଫେରିବା ପରିବର୍ତ୍ତେ ଯୋଗୀମାନେ ଥିବା ପାହାଡ଼ ଆଡ଼କୁ ବାହାରିଲା । ଦାସୀମାନେ ତା'ର ପଥ ଅବରୋଧ କରି ମହଲକୁ ଫେରିଯିବା ପାଇଁ କହିଲେ ।

ପୂରନ କହିଲା, "ଯୋଗୀପାଇଁ କାହୁଡ଼ିବା ମନା । ଯାହାକିଛି ପରିତ୍ୟାଗ କରାଯାଏ, ତାକୁ ଆଉ ଥରେ ଗ୍ରହଣ କରାଯାଇପାରେନା ।"

ଦାସୀମାନେ କହିଲେ, "ଗୁରୁ ତ ଆପଣଂକୁ ରାଣୀ ସୁନ୍ଦରୀଂକ ସହିତ ପଠାଇଥିଲେ ।"

ଉତ୍ତରରେ ପୂରନ କହିଲା, "ଗୁରୁଂକର ଆଦେଶ ଅନୁଯାୟୀ ମୁଁ ରାଣୀଂକ ସାଥିରେ ଚାଲି ଯାଇଥିଲି ।"

"ତାହାହେଲେ ଆପଣ ଏଠାରେ ରହୁନାହାଂନ୍ତି କାହିଁକି ?"

"ଗୁରୁ ମୋତେ ସାଂଗରେ ଯିବା ପାଇଁ ଆଦେଶ ଦେଇଥିଲେ; ସାଂଗରେ ରହିବା ପାଇଁ ନୁହେଁ ।"

ଦାସୀମାନେ ଅନେକ ବୁଝାଇଲେ । ପ୍ରଜ୍ଜ୍ୱଳିତ ଜ୍ୟୋତିପରି ଜଳୁଥିବା ପୂରନ ଲିଭିଯିବା ପାଇଁ ଚାହୁଁ ନଥିଲା । ତା' ଦେହରେ ହାତ ଦେବାପାଇଁ ମଧ୍ୟ ଦାସୀମାନଂକର ସାହସ ନଥିଲା । ସେମାନେ ବାଧ୍ୟ ହୋଇ ଫେରିଆସିଲେ । କେବଳ ଦାସୀମାନଂକୁ ଫେରିଆସିଥିବା ଦେଖି ରାଣୀ ନିରାଶ ହୋଇପଡ଼ିଲା । ସେ ରଂଗମହଲ ଉପରକୁ ଚଢ଼ି ପୂରନର ଯିବା ବାଟକୁ ଦେଖିବାକୁ ଲାଗିଲା; କିନ୍ତୁ ପୂରନର ପିଠି ଛଡ଼ା ତା'କୁ ଆଉ କିଛି ଦେଖାଯାଉ ନଥିଲା । ରାଣୀ ନିଜର ନିଷ୍ଫଳ ପ୍ରେମକଥା ମନେ ପକାଇ ବିଳାପ କରିଉଠିଲା ଓ ପୂରନର ନାମ ଧରି ପାଗଳୀ ପରି ଚିତ୍କାର କଲା :

"ରେ ରଂଗମହଲ ତେ ଚଢ଼ ରାମା,
ରୋ ରୋ ଆଗଦା ପୂରନା ଲୁଟ୍ଟ ଗିୟୋଁ ।
ବାଗ ଶୌକ ଦେ ପକ୍କ ତେୟାର ହୋୟ,
ନେହିଁ ଲାଏ କେ ପୂରନା ପୁଟ୍ଟ ଗିୟୋଁ ।

ଘଡ଼ୀ ବୈଠ ନା କୋଲ୍ ଗାୟାଁ ରଦ୍ଦ ଗଲ୍ଲାଁ,
ଝୂଠୀ ପ୍ରୀତ ଲଗାଏ କେ ଉଡ୍ଡ଼ ଗିୟୋଁ ।
କାଦର ୟାର ମିୟାଁ ସସ୍ସୀ ବାଁଗ ମୈନୂଁ
ଥଲ ବରତ କୁରଲାଉଁଦା ସୁଟ୍ଟ ଗିୟୋଁ ।"

ପୂରନ ଆଖି ଆଗରୁ ଅପସରିଗଲା ପରେ ରାଣୀ ସୁଂଦରୀ ରଂଗମହଲରୁ ତଳକୁ ଡେଇଁ ପଡ଼ି ଜୀବନ ହାରିଦେଲା । ସହର ସାରା ଦୁଃଖରେ ହାହାକାରମୟ ହୋଇଉଠିଲା ।

ପୂରନ ନିଜ ଗୁରୁଂକ ଆଗରେ ଛିଡ଼ାହୋଇଥାଏ । ଗୋରଖନାଥ ତା'ର ଅଟଳ ସଂଯମ ଦେଖି ସ୍ତବ୍ଧ ହୋଇଗଲେ । ପୂରନ ଥରକ ପାଇଁ ମଧ୍ୟ ନିଜର ପିତାମାତା ବା ଜନ୍ମଭୂମି କଥା ମନେ ପକାଇନଥିଲା । ନା ତା'ର ଲୁଣାଂ ପ୍ରତି କୌଣସି ଅଭିଯୋଗ ଥିଲା, ନା ଥିଲା ସୁଂଦରୀ ପ୍ରତି ପ୍ରେମ । ସିଏ ପ୍ରକୃତ ବ୍ରହ୍ମଜ୍ଞାନ ଲାଭ କରିସାରିଥିଲା, ପ୍ରଶଂସା-ନିଂଦାଠାରୁ ଅନେକ ଦୂରରେ ଏବଂ ପ୍ରେମ ଓ ଘୃଣାଠାରୁ ଅନେକ ଉର୍ଦ୍ଧ୍ୱରେ ସେ ନିର୍ବିକାର ହୋଇ

ଯାଉଥିଲା । ଗୁରୁ ଗୋରଖନାଥ ହୃଦୟଙ୍ଗମ କରିପାରିଥିଲେ ଯେ ସେ ଅନ୍ୟମାନଙ୍କୁ ଦୀକ୍ଷା ଦେବାପାଇଁ ଯୋଗ୍ୟ ହୋଇଯାଇଛି । ସେ ପୂରନକୁ ସମଗ୍ର ସଂସାରକୁ ଯୋଗର ଦୀକ୍ଷା ଦେବାପାଇଁ ଆଜ୍ଞାଦେଲେ । କିନ୍ତୁ ଏହି କାର୍ଯ୍ୟର ଶୁଭାରମ୍ଭ ତା'ର ନିଜର ନଗରରୁ କରିବାପାଇଁ ନିର୍ଦ୍ଦେଶ ଦେଲେ । 'ତୁମର ପିତା ଓ ବିମାତା ପାଇଁ ଏହି ଯୋଗଶିକ୍ଷାର ସବୁଠାରୁ ବେଶୀ ଆବଶ୍ୟକତା ରହିଛି ।'—ଏହା ଗୁରୁଙ୍କର ବାଣୀ ଥିଲା ।

ଆଜ୍ଞାଧୀନ ପୂରନ ଆପଣାର ସହର ଉଦ୍ଦେଶ୍ୟରେ ବାହାରିପଡ଼ିଲା । ସହର ତ୍ୟାଗ କରିବା ଓ ସେଠାକୁ ଫେରିବା ଭିତରେ ବାରବର୍ଷ ଅତିବାହିତ ହୋଇଯାଇଥିଲା । ସଲବାନର ପୁଣ୍ୟଫଳର ପ୍ରଭାବ ଆସ୍ତେ ଆସ୍ତେ ଫିକା ହୋଇଆସୁଥିଲା । ଲୁଣାଁ ମଧ୍ୟ ନିଜର ଗତପ୍ରାପ୍ତ ଯୌବନକୁ ଅନୁଭବ କରିପାରୁଥିଲା । ଏପର୍ଯ୍ୟନ୍ତ ତା'ର କୋଳ ଶୂନ୍ୟ ଥିଲା । ତା'କୁ ନିଜର ଶରୀର ଶାପଗ୍ରସ୍ତ ମନେହେଉଥିଲା । ଇଚ୍ଛାଁ କାନ୍ଦି କାନ୍ଦି ଅନ୍ଧୁଣୀ ପାଲଟିଯାଇଥିଲେ । ରାଜାଙ୍କର ନିଷ୍ଠୁର ଆଦେଶ ସଂପର୍କରେ ସହରରେ କେବେହେଲେ କେହି ପାଟି ଫିଟାଇ ନଥିଲେ । ମନେହେଉଥିଲା ଯେମିତି ରାଜାଙ୍କର ଆଦେଶକୁ ପ୍ରଜାମାନେ କେବେହେଲେ ସ୍ୱୀକାର ମଧ୍ୟ କରିନାହାଁନ୍ତି । ପ୍ରତ୍ୟେକ ନଗରବାସୀର ମୁଣ୍ଡ ଉପରେ ଯେମିତି ଏକ ଅଦୃଶ୍ୟ ଛାୟା ଘୂରିବୁଲୁଥିଲା । ପୂରନର ଜନ୍ମଦିନ ଅବସରରେ ରାଜା ଏକ ସ୍ମୃତି-ଉଦ୍ୟାନ ନିର୍ମାଣ କରାଇଥିଲେ । କିନ୍ତୁ ରାଜାଙ୍କ ହୃଦୟ ପୂରନ ପ୍ରତି ଏତେ ଅସନ୍ତୁଷ୍ଟ ହୋଇପଡ଼ିଥିଲା ଯେ ସେ ଏହି ଉଦ୍ୟାନର ଯତ୍ନନେବା ବିଷୟ ମଧ୍ୟ ଭୁଲିଯାଇଥିଲେ । ପୂରନ ଆସି ଏହି ନଷ୍ଟପ୍ରାପ୍ତ ନିର୍ଜନ ଉଦ୍ୟାନ ଭିତରେ ଆଶ୍ରୟ ନେଇଥିଲା ।

ସଂସାରରେ କୌଣସି ବସ୍ତୁ ସଂପୂର୍ଣ୍ଣ ଭାବରେ ନଷ୍ଟ ହୋଇଯାଏ ନାହିଁ ।

———

ହରିଭଜନ ସିଂହ

# ରାଜା ରସାଲୁ

ରାଜା ସଲବାନ ନିଜର ଏକମାତ୍ର ପୁତ୍ରକୁ ମୃତ୍ୟୁଦଂଡର ଆଦେଶ ଶୁଣାଇଥିଲେ । ନିଜ ପକ୍ଷରୁ ସେ ନ୍ୟାୟ ବିଚାର କରିଥିଲେ । ଯାହାର ଯାହା ପାଉଣା ତାକୁ ସେ ତାହା ଦେଇ-ଥିଲେ; ହେଲେ ତାଂକ ମନରେ ଆନଂଦ ନଥିଲା । ଦୁଇଟି ରାଣୀ ଥିଲେ ସୁଦ୍ଧା ଉଭୟଂକର କୋଳ ଶୂନ୍ୟ ଥିଲା । ଏଡ଼େ ବିଶାଳ ରାଜ୍ୟ, ରାଜମହଲ, ବିରାଟ ନଅର ସବୁ କିଛି ଥିଲା; କିଂତୁ ସବୁ ଯେମିତି ଅଂଧକାରମୟ ହୋଇପଡ଼ିଥିଲା । ରାଜାଂକର ଆୟୁଷ ଶେଷ ହୋଇଆସୁଥିଲା; କିଂତୁ ରାଜ୍ୟର କୌଣସି ଉତ୍ତରାଧିକାରୀ ଜନ୍ମ ହୋଇନଥିଲେ । ପୂରନର ମା' ପାଟରାଣୀ ଇଛରାଁ ପୁତ୍ରଶୋକରେ କାଂଦି କାଂଦି ଅଂଧୁଣୀ ପାଲଟିଯାଇଥିଲେ । ଛୋଟ ରାଣୀ ଲୁଣାଁର ଯୌବନ ଗଡ଼ିଯାଉଥିଲା; କିଂତୁ ତା' କୋଳରେ ଏ ପର୍ଯ୍ୟଂତ ସଂତାନର ଅଭାବ ରହିଯାଇଥିଲା । ତା' ମନ ଭିତରେ ଥିବା ଏକ ଗଭୀର କ୍ଷତର ଯନ୍ତ୍ରଣାରେ ସେ ଛଟପଟ ହେଉଥିଲା । ତାକୁ ସବୁବେଳେ ଭୟ ଖାଇଯାଉଥିଲା ଯେ କାଳେ କେଉଁ ଦୁର୍ବଳ ମୁହୂର୍ତ୍ତରେ ଅସାବଧାନତା ଯୋଗୁଁ କିଂବା ସ୍ୱପ୍ନରେ ବିଳିବିଳେଇ ହୋଇ ସେ ନିଜେ ନିଜର ପାପ କାହାଣୀ ଖୋଲି ନଦେଉ । ବର୍ଷ-ବର୍ଷଧରି ସେ ଶୃଂଗାର କରିନଥିଲା । ସେ କେବେ ଅଭିମାନ କରିନଥିଲା; କିଂବା ରାଜା ମଧ୍ୟ ତାକୁ କେବେ ବୁଝାଇନଥିଲେ । ଏହି ମହଲରେ ଯେମିତି ସବୁକିଛି ଶେଷ ହୋଇସାରିଥିଲା । ଦାସଦାସୀମାନେ ମଧ୍ୟ ନିଷ୍ପ୍ରାଣ ଛାଇ ପରି ଏପଟ ସେପଟ ହେଉଥିଲେ ।

ଦିନେ ଖବର ମିଳିଲା ଯେ ଜଣେ ଯୋଗୀ ପୂରନର କୂଅ ପାଖରେ ଆସ୍ଥାନ ଜମାଇଛି । ଅନେକ ବର୍ଷଧରି ସେଇ କୂଅରୁ କେହି ପାଣି କାଢ଼ି ନଥିଲେ । ପାଖରେ ଥିବା ବଗିଚାଟି ଯତ୍ନ ଅଭାବରେ ଶୁଖିଯାଇ ନଷ୍ଟ ହୋଇଯାଇଥିଲା । ଏପରିକି କୂଅପାଣିରେ ମଧ୍ୟ ପୋକ ହୋଇଯାଇଥିଲେ । ଲୋକେ ଏହି ଅଶୁଭ ବଗିଚା ଭିତରକୁ ବୁଲିବାପାଇଁ ମଧ୍ୟ ଆସୁନଥିଲେ । କିଂତୁ ଯୋଗୀର ଆଗମନ ପରେ କୂଅରୁ ପାଣି କଢ଼ାହେବାକୁ ଲାଗିଲା, ବଗିଚାର ଗଛଲତା ଫୁଲଫଳରେ ପୂରିଉଠିଲା ଓ ଶ୍ରଦ୍ଧାଳୁ ବ୍ୟକ୍ତିମାନେ ସେଠାରେ

ଠୁଳ ହେବାକୁ ଲାଗିଲେ । ଲୋକଂକ କହିବା ଅନୁସାରେ, ନଅରର ଗ୍ରୁଡରେ ଏକ ଧଳାକାଉ ଆସି ବସିଥିଲା । ଇଚ୍ଛରାଁ ଓ ଲୁଣାଁ ଉଭୟଂକର ମନେହେଲା ଯେମିତ ପୁଅ ମା'କୁ ଡାକୁଛି ! ସେମାନେ ଖାଲି ପାଦରେ ଯୋଗୀର ଦର୍ଶନ କରିବାପାଇଁ ଯିବାକୁ ସ୍ଥିର କଲେ ।

ରାଣୀ ଇଚ୍ଛରାଁ ବାରବର୍ଷ ହେଲା ଅଂଧାର ଘରେ ପଡ଼ିରହିଥିଲେ ! ଆଜି ପ୍ରଥମ ଥର ପାଇଁ ସେ ଗୋଲପୀ ବସ୍ତ୍ର ପିଂଧି ଶୋକମହଲରୁ ପଦାକୁ ବାହାରିଥିଲେ । ଏହି ସଂବାଦ ସୁଗଂଧ ପରି ସାରା ସହରରେ ବ୍ୟାପିଗଲା । ତାଂକ ସେବା ପାଇଁ ଘୋଡ଼ାଗାଡ଼ି ନେଇ ସାରଥି ସିଂହଦ୍ୱାରରେ ପହଂଚଗଲା । କିଂତୁ ଅଜଣା ମମତାର ଡୋରି ମାଆକୁ ପୁଅପାଖକୁ ଓଟାରି ନେଉଥିଲା । ସେ ଖାଲି ପାଦରେ ଝୁଂଟିଝୁାଂଟି ହୋଇ ଆଗକୁ ଚାଲିଯାଉଥିଲେ । ଅଂଧ ଆଖିରେ ମଧ୍ୟ ସେ ନିଜ ପୁଅର ବଗିଚାକୁ ଯିବାପାଇଁ ରାସ୍ତା ଚିହ୍ନି ପାରୁଥିଲେ । ଆଗରେ ରାଣୀ ଓ ତାଂକ ପଛେ ପଛେ ଘୋଡ଼ାଗାଡ଼ି ଚାଲିଥାଏ । ରାଣୀଂକର ପହଂଚିବା ପୂର୍ବରୁ ତାଂକ ଖବର କୂଅ ପର୍ଯ୍ୟଂତ ପହଂଚିସାରିଥିଲା ।

ଯୋଗୀ ନିଜ ମାଆକୁ ପାଦ ଟଳମଳ କରି ତାଂକ ଆଡ଼କୁ ଚାଲିଆସୁଥିବାର ଦେଖି ନିଜର ଆସନ ଗ୍ରାଡ଼ି ଛିଡ଼ାହେଲା । କିଛି ବାଟ ଆଗେଇଯାଇ ସେ ନିଜେ ମାଆର ହାତ ଧରି ଚାଲିବା ପାଇଁ ସାହାଯ୍ୟ କଲା । ମା'ପୁଅ ଏହି ଅବସ୍ଥାରେ ଚାଲିଯାଉଥିବା ସମୟରେ ଇଚ୍ଛରାଁ କହିଲେ, "ତୁ ଛୁଇଁଲାବେଳେ ମୋ ପୁଅର ସ୍ପର୍ଶପରି ମନେ ହେଉଛି ! ତୁ ହେଉଛୁ ମୋର ଯୋଗୀପୁଅ ?"

ଯୋଗୀର ହୃଦୟ ମଧ୍ୟ ଦ୍ରବୀଭୂତ ହୋଇଉଠିଲା । ତାକୁ ବି ତ ଅନେକ ବର୍ଷପରେ ମା'ର ସ୍ପର୍ଶ ମିଳିଥିଲା । ସେ ଉତ୍ତର ଦେଲା, "ହଁ ମା, ମୁଁ ତୋର ଯୋଗୀପୁଅ !"

ପୂରନର ଉଦ୍ୟାନ ପରି ପୂରନର ମାଆର ହୃଦୟ ମଧ୍ୟ ଫୁଲଫଳରେ ଭରିଉଠିଲା । ତାଂକର ନୟନର ଜ୍ୟୋତି ଫେରିଆସିଲା ଓ ମମତାରେ ସ୍ତନରୁ ଦୁଧଧାର ବହିଗଲା ।

ଇଚ୍ଛରାଁଂକ ପଛେ ପଛେ ରାଜା ସଲବାନ ଓ ଲୁଣାଁ ମଧ୍ୟ ଚାଲିଆସୁଥିଲେ । ଦେଖିବା ଲୋକଂକର ମନେହେଉଥିଲା ଯେମିତି ଶୀତରିବଂଦର ବୋଝରେ ନଇଁଯାଇ ଗଛମାନେ ଚାଲିଆସୁଛଂତି ! ପୂରନର ସ୍ପର୍ଶ କ'ଣ ଏମାନଂକ ଜୀବନରେ ମଧ୍ୟ ଖୁସି ଭରିଦେବ ? ପୂରନ ନିଜର ବୃଦ୍ଧ ପିତାଂକୁ ନିଜଆଡ଼କୁ ଆସୁଥିବାର ଦେଖି ନମ୍ରଭାବରେ ନିଜ ଆସନରୁ ଛିଡ଼ା ହୋଇପଡ଼ିଲା । ସଲବାନ ଧୂନି ପାଖରେ ପହଂଚିସିବା ପରେ ପୂରନ ନଇଁଯାଇ ତାଂକୁ ପ୍ରଣାମ କଲା । ରାଜା ବିସ୍ମିତ ହେଲେ । ସେ କହିଲେ :

"ଯୋଗୀ, ମୋ ମୁଂଡଉପରେ ଆହୁରି ବୋଝ ଲଦି ଦିଅ ନାହିଁ । ମୁଁ ତୁମର ଧୂନିରୁ ଟିକିଏ ବିଭୂତିମାତ୍ର ଲାଭ କରିବା ଆଶାରେ ଆସିଛି । ମୁଁ ତୁମର କୃପାପ୍ରାର୍ଥୀ ।"

"ରାଜା, ଏହି ଧୂନି ତୁମର ଦୟାର ଫଳ । ତୁମର ଯାହା ଇଚ୍ଛା, ତା ନେଇଯାଅ ।"

ରାଜା ସ୍ତବ୍ଧ ହୋଇ ଠିଆହୋଇଥିଲେ । ତାଂକ ତୁଂଡରୁ କଥା ବାହାରୁନଥିଲା । ହେଲେ ସଂତାନହୀନା ଲୁଣାଁ ଅବା କେମିତି ଚୁପ୍ ହୋଇ ରହିଥାଆନ୍ତା ? ସେ କହିଲା,

"ଯୋଗୀଶ୍ରେଷ୍ଠ ! ଆପଣ ଯଦି ଆମପ୍ରତି କୃପା କରୁଛନ୍ତି ତା'ହେଲେ ରାଜାଙ୍କୁ ଗୋଟିଏ ମାତ୍ର ପୁତ୍ରସନ୍ତାନର ବର ଦିଅନ୍ତୁ ।"

ଯୋଗୀ କହିଲା, "ରାଜାଙ୍କର ତ ଗୋଟାଏ ପୁଅ ଆଗରୁ ଅଛି ।"

ରାଜାଙ୍କ ଆଖିରୁ ଲୁହଧାର ଗଡ଼ିଗଲା । ସେ କହିଲେ, "ଯୋଗୀ ! ମୋର ପୁଅଟିଏ ଥିଲା; କିନ୍ତୁ ସେ ଏବେ ଆଉ ନାହିଁ । ସେ ଯଦି ଜୀବନରେ ଥାଆନ୍ତା ତା'ହେଲେ ସେଇ କୁକର୍ମୀକୁ ଏବେ ଫେରାଇ ଆଣନ୍ତି । ପୁତ୍ରହୀନ ହୋଇ ମରିବାଠାରୁ ବରଂ..."

ଯୋଗୀ କଥା ଛଡ଼ାଇ ନେଇ କହିଲା, "ନା ରାଜା, ତୁମର ପୁଅ ଏବେ ମଧ୍ୟ ଅଛି । ସେ କୁକରମୀ ମଧ୍ୟ ନୁହେଁ; କିନ୍ତୁ ତୁମେ ତାକୁ ଘରକୁ ଫେରାଇନେଇ ପାରିବ ନାହିଁ ।"

ରାଜା ଜାଣିଥିଲେ ଯେ ଯୋଗୀମାନେ ମିଥ୍ୟାକଥା କହନ୍ତି ନାହିଁ । ସେ କୁପିତ ଦୃଷ୍ଟିରେ ଲୁଣାଁ ଆଡ଼କୁ ଦେଖିଲେ । ଲୁଣାଁ ପ୍ରଥମରୁ ନିର୍ଜୀବ ପଥରପରି ଛିଡ଼ାହୋଇଥାଏ । ତା' ଆଖିରୁ ଧାର ଧାର ହୋଇ ଲୁହ ଗଡ଼ିପଡ଼ିଲା । ଯୋଗୀର ମୁଖମଣ୍ଡଳରୁ ବାହାରୁଥିବା ଜ୍ୟୋତି ସାମ୍ନାରେ ଛିଡ଼ା ହୋଇ ମିଛ କହିବାପାଇଁ ସାହସ ଲୁଣାଁର ନଥିଲା । ତା' ସାଙ୍ଗକୁ ରାଜାଙ୍କ ଆଖିରେ ମଧ୍ୟ ଦୁଃଖର ଛାୟା ଖେଳିଯାଇଥିଲା । ଲୁଣା ନିଜେ ପୁତ୍ରସନ୍ତାନ ପାଇଁ ବର ମାଗିବା ଆଶାରେ ଯୋଗୀର ଆସ୍ଥାନକୁ ଆସିଥିଲା । ସେ କାନ୍ଦି କାନ୍ଦି ନିଜର ଦୋଷ ସ୍ୱୀକାର କଲା : "ପୂରନର କିଛି ଦୋଷ ନାହିଁ । ମୁଁ ମୋର ବୁଦ୍ଧିବୃତ୍ତି ସବୁ ହରାଇ ଦେଇଥିଲି । ମୁଁ ତା'ର ରୂପର ତେଜକୁ ସହ୍ୟ କରି ନପାରି ମୋ ନିଜର ଧର୍ମକୁ ଭୁଲି ଯାଇଥିଲି ।"

ରାଜା କ୍ରୋଧରେ ନିଜର ଖଣ୍ଡା କାଢ଼ି ନେଇ ଲୁଣାଁର ମୁଣ୍ଡ କାଟିଦେବା ପାଇଁ ଉଦ୍ୟତ ଥିଲେ; କିନ୍ତୁ ପୂରନ ତାଙ୍କର ହାତକୁ ଧରିପକାଇଲା ଓ କହିଲା, "ରାଜା, ଯାହା କିଛି ହେଲା, ଭଲ ହୋଇଛି । ତୁମେ କାହିଁକି ରାଗୁଛ ? ଏବେ ମଧ୍ୟ ତୁମର ପୁଅ ବଞ୍ଚିଛି ଓ ବର୍ତ୍ତମାନ ସେ ତୁମର ସମ୍ମୁଖରେ ବସିଛି ।"

ଏହା ଶୁଣି ସେଠାରେ ଜମାହୋଇଥିବା ଲୋକମାନେ ଭଲଭାବରେ ତା' ମୁହଁକୁ ଦେଖିଲେ ଓ ତା'କୁ ଚିହ୍ନିବା ପାଇଁ ଚେଷ୍ଟାକଲେ । ସେମାନେ ଯୋଗୀର ମୁହଁରେ ରାଜକୁମାରର ରୂପ ଦେଖିପାରିଲେ । ସେମାନେ ସମସ୍ତେ ଯୋଗୀକୁ କୋଳାଗ୍ରତ କରିବାପାଇଁ ଆଗେଇଲେ; କିନ୍ତୁ ଯୋଗୀ ଧୁନି ଭିତରୁ ଏକ ନିଆଁ ଖୁଣ୍ଟା କାଢ଼ି ହାତରେ ଧରି ଠିଆ ହୋଇଗଲା । ସେ କହିଲା, "ରାଜା, ମୁଁ ମୋହମାୟାର ସମ୍ପର୍କ ଛିନ୍ନ କରିଦେଇ ସାରିଛି । ଏବେ ଆମ ପକ୍ଷରେ ପୁଣି ଥରେ ପିତା-ପୁତ୍ରର ସମ୍ପର୍କ ଯୋଡ଼ିବା ଅସମ୍ଭବ । ତୁମର ନିରାଶ ହେବାର କୌଣସି କାରଣ ନାହିଁ । ତୁମର ପୁଅ ଯେଉଁଠାରେ ଥିଲେ ମଧ୍ୟ ସେ ତୁମ କୁଳର ମର୍ଯ୍ୟାଦା ବୃଦ୍ଧି କରିବ । ଯେଉଁଠି ମଧ୍ୟ ପୂରନ ଯୋଗୀର ନାଁ ପଡ଼ିବ, ସେଠି ଲୋକେ ରାଜା ସଲବାନର ନାଁ ଧରିବେ । ରାଜମର୍ଯ୍ୟାଦା ହେଉଛି କ୍ଷଣସ୍ଥାୟୀ; କିନ୍ତୁ ଧର୍ମର କାହାଣୀ ଯୁଗ-ଯୁଗଧରି ଅମର ହୋଇ ରହିବ ।"

ଲୁଣାଁ କହିଲ, "ମୋର କାରଣରୁ ଆଜି ରାଜମହଲ ଶୂନ୍ୟ । ଯେତେବେଳେ ପର୍ଯ୍ୟଂତ ରାଜାଂକର ପୁଅ ରାଜମହଲକୁ ଫେରି ନ ଯାଇଛୁ, ସେ ପର୍ଯ୍ୟଂତ ମୁଁ ମଧ୍ୟ ରାଜମହଲରେ ପାଦ ରଖିବି ନାହିଁ । ଯୋଗୀପୁଅ, ତୁ ଘରକୁ ନଫେରିବା ପର୍ଯ୍ୟଂତ ମୋ ମୁଣ୍ଡରୁ କଳଂକ ଧୋଇ ହେବନାହିଁ । ଯଦି ତୁ ମୋ ଉପରେ ଦୟା କରୁଛୁ, ତା'ହେଲେ ମୋର ସବୁ ଅପରାଧ କ୍ଷମା କରିଦେ । ନିଜ ଘରକୁ ଫେରିଚାଲ ।"

ଯୋଗୀ ନିଜର ଭିକ୍ଷାଥାଳରୁ ଗୋଟାଏ ଚାଉଳ ଉଠାଇ ନେଇ ଲୁଣାର ହାତ ପାପୁଲିରେ ରଖିଦେଲା ଓ କହିଲ, "ମା' ! ଘରକୁ ଫେରିଯା' । ତୋ ସହିତ ତୋର ପୁଅ ମଧ୍ୟ ଘରକୁ ଯିବ । ତୋ'ର କୋଳ ମଧ୍ୟ ଏଇ ଉଦ୍ୟାନ ଭଳି ପୁରିଉଠିବ ।"

ରାଜା କହିଲେ , "ପୂରନ ! ତୁ ମଧ୍ୟ ଘରକୁ ଫେରିଆ । ତୋ ବିନା ଭଙ୍ଗା ଘର ଆଉ ଗଢ଼ି ହେବ ନାହିଁ ।"

ଉତ୍ତରରେ ପୂରନ କହିଲ, "ରାଜା, ମୁଁ ଘରକୁ ଫେରିଯାଇ ପାରିବି ନାହିଁ । ତୁମ ପାଇଁ ମୋର ମୃତ୍ୟୁ ହୋଇଯାଇଛି । ମୋ ମୁହଁରୁ ଥରଟିଏ ଯେଉଁ କଥା ବାହାରିଯାଇଛି, ତା' ଆଉ ଅନ୍ୟଥା ହେବ ନାହିଁ । ତୁମ ଘରେ ପୁଅ ଜନ୍ମହେବ; କିଂତୁ ତାକୁ ମଧ୍ୟ ତୁମେ ଘରେ ରଖିପାରିବ ନାହିଁ । ମା' ଲୁଣାଁ ମଧ୍ୟ ମା' ଇଚ୍ଛିରାଂକ ପରି ପୁଅକୁ ହରାଇ କାଂଦିବ, ଚିତ୍କାର କରିବ ।"

କିଛିଦିନ ଗଲପରେ ଲୁଣାର ଗର୍ଭରୁ ରସାଲୁର ଜନ୍ମ ହେଲ । ଜ୍ୟୋତିଷମାନେ ରାଶି ନକ୍ଷତ୍ର ଦେଖି ତାକୁ ମଧ୍ୟ ବାରବର୍ଷ ପର୍ଯ୍ୟଂତ ପିତାମାତାଂକ ପାଖରୁ ଦୂରେଇ ରଖିବା ପାଇଁ ପରାମର୍ଶ ଦେଲେ । ତା'ର ଗ୍ରହ ନକ୍ଷତ୍ର ମଧ୍ୟ ପୂରନର ଗ୍ରହ ନକ୍ଷତ୍ର ସହିତ ସମାନ ଥିଲ । ପଣ୍ଡିତମାନେ କହିଲେ, "ଏଇ ରାଜପୁତ୍ର ବଳବାନ୍ ଓ ନିର୍ଭୀକ ହେବା ସଂଗେ ସଂଗେ ଯୋଗୀମାନଂକ ପରି ସଂସାର ପ୍ରତି ନିର୍ଲିପ୍ତ ମଧ୍ୟ ହେବ ।"

ରସାଲୁକୁ କାରାଗାରରେ ନିକ୍ଷେପ କରାଗଲା । ତା' ପାଇଁ ଦାସୀ ପୋଇଲା ଖଂଜା-ଦିଆଗଲା । ବାରବର୍ଷ ପାଇଁ ଖର୍ଚ୍ଚ ଇତ୍ୟାଦିର ବ୍ୟବସ୍ଥା ମଧ୍ୟ କରିଦିଆହେଲ । ଯେଉଁ ଦିନ ରସାଲୁ ଜନ୍ମହେଲ ସେଦିନ ରାଜାଂକର ଘୋଡ଼ାଶାଳରେ ଏକ ଘୋଡ଼ାଛୁଆ ମଧ୍ୟ ଜନ୍ମ ହୋଇଥିଲ । ତା'ର ନାମ ରଖାଗଲ 'ଫୌଲାଦୀ' । ଘୋଡ଼ାଟିର ମଧ୍ୟ ପାଳନ-ପୋଷଣର ବ୍ୟବସ୍ଥା ରସାଲୁ ସହିତ କରାହେଲ ।

ରସାଲୁ ଦିନକୁ ଦିନ ବଡ଼ ହେବାକୁ ଲଗିଲ । ବାରବର୍ଷ ପରେ ସେ ରୁଦ୍ଧ ପ୍ରକୋଷ୍ଠରୁ ବାହାରକୁ ଆସିଲ । ସେ ଦେଖିବାକୁ ଯେମିତି ସୁଂଦର ଥିଲ, ସେଇଭଳି ସ୍ୱାସ୍ଥ୍ୟବାନ୍ ମଧ୍ୟ ଥିଲା । ତା'ର ଗୁରୁମାନେ ତାକୁ ରାଜକାର୍ଯ୍ୟ ସଂପର୍କୀୟ ସମସ୍ତ ବିଦ୍ୟା ଶିକ୍ଷା ଦେଇଥିଲେ । ଘୋଡ଼ାଚଢ଼ା, ଧନୁଚାଳନା, ଖଂଡାଖେଳ ଇତ୍ୟାଦିରେ ସେ ନିପୁଣ ଥିଲ । ସେ ଘର ବାହାରେ ଶିକାର କରୁଥିଲା ଓ ଘରଭିତରେ ପଶା ଖେଳୁଥିଲା ।

ରସାଲୁ ଯୁବକ ହେଲ ପରେ କୌତୁକରେ ବାଟୁଲି ମାରିବାକୁ ଲଗିଲ । ଗାଁର ସ୍ତ୍ରୀଲୋକ-

ମାନେ କୂଅରୁ ପାଣି ଆଣିଲା ସମୟରେ ସେ ବାଟୁଳି ମାରି ଆଁଖିପିଛୁଳାକେ ମାଠିଆରେ ଦଶ ବାରଟି କଣା କରିଦେଉଥିଲା । ଗୃହିଆଡ଼କୁ ପାଣି ବୋହିଯାଉଥିଲା । ଏଇ ଦୃଶ୍ୟ ଦେଖିଲେ ସ୍ୱପ୍ନ ଦେଖିଲା ପରି ମନେହେଉଥିଲା । ହେଲେ ଏଇ କାମରୁ ରସାଲୁ ଆନନ୍ଦ ଲାଭକଲେ ମଧ୍ୟ ଏହାଦ୍ୱାରା ଲୋକଙ୍କର ବହୁତ କ୍ଷତି ହେଉଥିଲା । ସ୍ତ୍ରୀଲୋକମାନେ ଯାଇ ଲୁଣାର ମହଲରେ ତାକୁ ଗୁହାରି କଲେ । ଲୁଣାଁ ନିଜର ଗେହ୍ଲାପୁଅକୁ ବାରଣ କରିପାରିଲା ନାହିଁ । ସେ ସମସ୍ତଙ୍କୁ ମାଠିଆ ବଦଳରେ ଗରା ଯୋଗାଇଦେଲା । କିନ୍ତୁ ରସାଲୁ ତା' ମାଆଠାରୁ ବେଶି ବୁଦ୍ଧିମାନ୍ ଥିଲା । ସେ ବାଟୁଳି ଛାଡ଼ି ଧନୁଶର ଧରିଲା । ଏବେ ସେ ଶର ମାରି ଗରା-ଗୁଡ଼ିକୁ କଣା କରିଦେଉଥିଲା । ପ୍ରଜାମାନେ ଅନେକ ଦୁଃଖ ପାଉଥିଲେ । ଏବେ ରାଜାଙ୍କ ପାଖରେ ଗୁହାରି ପହଂଚିଲା । ରାଜା ନିଜର ଏକୋଇର ବଳାକୁ କିଛି କହିପାରିଲେ ନାହିଁ । କିନ୍ତୁ ପ୍ରଜାମାନଙ୍କର ଦୁଃଖ ଦେଖିବା ମଧ୍ୟ ତାଙ୍କ ପକ୍ଷରେ ସଂଭବ ନଥିଲା । ସେ ନିଜ ପୁଅର ଏକ ପ୍ରତିମୂର୍ତ୍ତି ନିର୍ମାଣ କରାଇଲେ ଓ ତା' ମୁହଁରେ କଳା ବୋଳି ରାଜମହଲର ଦ୍ୱାରରେ ରଖାଇଦେଲେ । ରସାଲୁ ଶିକାରରୁ ଫେରି ରାଜମହଲର ଦ୍ୱାର ନିକଟରେ ନିଜର ପ୍ରତିମୂର୍ତ୍ତି ଦେଖିପାରିଲା—କଳା ମୁହଁ ଓ ନେଳିଆ ଗୋଡ଼ । ସେ ରାଜାଙ୍କର କ୍ରୋଧ ବୁଝିପାରିଲା । ସେ ଜାଣିପାରିଲା ଯେ ମହଲରେ ତା'ର ଦାନାପାଣିର ଦିନ ସରିଯାଇଛି । ରସାଲୁ ନିଜର ରାଜ୍ୟ ତ୍ୟାଗ କରିବା ପାଇଁ ନିଷ୍ପତ୍ତି କଲା ।

ରାଜକୁମାରର ନିର୍ବାସନର ଖବର ସହର ସାରା ବ୍ୟାପିଗଲା । ସାହସୀ ଯୁବକମାନେ ରସାଲୁ ସହିତ ଯିବାପାଇଁ ବାହାରିପଡ଼ିଲେ । ସମସ୍ତେ ସ୍ଥିର କଲେ ଯେ ନିଜ ରାଜ୍ୟରୁ ବାହାରକୁ ଯାଇ ନିଜର ସାହସବଳରେ ଯାହା କିଛି କରି ସମସ୍ତଙ୍କୁ ଦେଖାଇଦେବେ । ଏଇ ଯୁବକମାନଙ୍କର ମା'ମାନେ ପୁଣି ଥରେ ଲୁଣାଁର ମହଲରେ ପହଂଚିଗଲେ । ସେମାନେ ଲୁଣାଁକୁ ବାହାରକୁ ଯାଇ ନିଜ ପୁଅକୁ ଅଟକାଇ ରଖିବା ପାଇଁ ଅନୁରୋଧ କଲେ; ହେଲେ ଧନୁର ତୀର ବାହାରି ଯାଇ ସାରିଥିଲା । ରସାଲୁ ଓ ତା'ର ସାଥୀମାନେ ସହରରୁ ଅନେକ ଦୂରକୁ ପହଂଚି ଯାଇ ସାରିଥିଲେ । ଲୁଣାଁ ମହଲର ଛାତ ଉପରେ ଚଢ଼ି ନିଜର ପୁଅକୁ ଦେଖିବାପାଇଁ ଗୃହିଆଡ଼କୁ ଅନାଇଲା; ହେଲେ ଧୂଳିର ମେଘ ଛଡ଼ା ଆଉ କିଛି ଦେଖାଯାଉ ନଥିଲା । ଲୁଣାଁ ପୁତ୍ରର ବିଚ୍ଛେଦରେ ଅଧୀର ହୋଇ ବିଳାପ କଲା :

"ବେ ତୂଁ ଚଲିଉଁ ଦେସ ବଗାନେ ପୁତ୍ତର ରସାଲୁଆ,
ବେ ତୁଁ ମୁଡ ଆ କଦେ ବହାନେ ପୁତ୍ତର ରସାଲୁଆ,
କଲାଗୀ ତେସ୍ସ ମିଛୀ ତ ରୁଲ ଗଈ,
ତେରେ ନକ୍ଶ ନା ଜାଣ-ପଛାଣେ, ବେ ପୁତ୍ତର ରସାଲୁଆ ।
ଡଖ୍ଖୀ ଛୁରେ କଲେଦେ ଧାଣୀ
ଜା ବୈଠୀ ଦଲ ଦେ ଖାନେ, ବେ ପୁତ୍ତର ରସାଲୁଆ ।

ପିଚ୍ଛେ ତାଁ ଛଡ଼ ଗିଓଁ , ବଲଦଯାଁ ଲଟାଂ,
ବେ ତୂଁ ବନ୍‌ନ ଗିଯୋଁ ଅଗ୍‌ଗ ଦେ ଗାନେ, ବେ ପୁତ୍ତର ରସାଲୁଆ ।"

(ପୁଅ ରସାଲୁ, ତୁ ଅଜଣା ଦେଶକୁ ଚାଲିଯାଇଛୁ । ପୁଅରେ, ତୁ କିଛି ବାହାନା ଦେଖାଇ ଫେରିଆ, ତୋର ପଗଡ଼ିର ଚୂଳରେ ଧୂଳିମାଟି ଲାଗି ନଷ୍ଟ ହୋଇଗଲଣି, ତୋର ରୂପ ଆଉ ଚହଟି ହେଉନାହିଁ, ତୀକ୍ଷ୍ଣ ଛୁରୀ ଆସି ସିଧା କଲିଜାରେ ଲାଗିଯାଇଛି । ତୁ ଦାଉଦାଉ ହୋଇ ଜଳୁଥିବା ନିଆଁ ଶିଖାକୁ ତୋ ପଛରେ ଛାଡ଼ି ଦେଇ ଯାଇଛୁ, ନିଆଁର ଶୀତ ହୋଇ ଜଳୁଛୁ ।)

ରସାଲୁ ସହର ଆଡ଼କୁ ପିଠିକଲା ପରେ ଆଉ ଥରଟିଏ ପାଇଁ ମଧ୍ୟ ବୁଲି ପଛକୁ ଅନାଇଲା ନାହିଁ । ସିଆଲକୋଟରୁ ବାହାରି ସେ ଗୁଜରାଟରେ ପହଂଚିଲା । ସେଠି ଜଣେ ଗୁଜର୍‌ବଂଶୀୟ ରାଜା ରାଜୁତି କରୁଥିଲେ । ରାଜା ସହର ବାହାରକୁ ଆସି ରସାଲୁଙ୍କୁ ପାଛୋଟି ନେଲେ ଓ ରସାଲୁଙ୍କୁ ପଚାରିଲେ :

"କିସ ରାଜେ କା ପୁତ୍ତର ହୈଁ,
ତେ କ୍ୟା ହେ ତେରା ନାମ ।
କେ ହଡ଼ା ତେରା ଦେସ ସୋଣିୟାଁ
କେହଡ଼ା ନଗର ଗ୍ରାମ ?"

( ତୁ କେଉଁ ରାଜାଂକ ପୁଅ, ତୋ'ର ନାମ କ'ଣ ? ହେ ରୂପବାନ୍ ଯୁବକ, ତୁ କେଉଁ ଦେଶରୁ ଆସିଛୁ ? କେଉଁ ନଗର, କେଉଁ ଗ୍ରାମରୁ ଆସିଛୁ ? )

ରସାଲୁ ଉତ୍ତର ଦେଲା :

"ମୈଁ ରାଜେ ସଲବାନ ଦା ପୁତ୍ତର
ମେରା ନାମ ରସାଲୁ
ମେରା ତାଁ ହୁଣ ଦେସ ନା କୋଇ
ପିଯୋ ଦା ଦେସ ସିୟାଲ ।"

( ମୁଁ ରାଜା ସଲବାନଂକ ପୁତ୍ର । ମୋର ନାମ ରସାଲୁ । ଏବେ ଆଉ ମୋର କୌଣସି ଦେଶ ନାହିଁ । ମୋ ପିତାଂକର ଦେଶର ନାମ ହେଉଛି ସିୟାଲ । )

ଗୁଜର ରାଜା ଜାଣିଥିଲେ ଯେ ରସାଲୁ ବଡ଼ ବେଖାତିର ଯୁବକ । ସେ କହିଲେ, "ଯଦି ତୁମର ବଳ ପରୀକ୍ଷା କରିବାର ଅଛି, ତା'ହେଲେ ଝେଲମ୍ ଆଡ଼କୁ ଯାଅ । ସେଇ ଦେଶର ରାଜଭାଗରୁ ଭାଗେ ଅଂଶରେ ତୁମର ଦାବୀ ଅଛି । ତୁମର ପିତା ଅନେକ ଧନଧାନ୍ୟ ନିଃସଂତାନ ଥିଲେ ଓ ସେ କେବେ ମଧ୍ୟ ନିଜର ଦାବୀ ଉପସ୍ଥାପନା କରିନାହାଂତି ।"

ଫୌଲାଦୀ ଘୋଡ଼ାର ପିଠିରେ ବସି ରସାଲୁ ଆଗେଇଗଲା । ସେ ଦୁଇମହଣ ଓଜନର ଧନୁଟିକୁ ହାତରେ ଧରିଲା । ସେଇଥିରୁ ଏକସମୟରେ ତିନୋଟି ଶର ନିକ୍ଷେପ କରାଯାଇ

ପାରୁଥିଲା ଓ ସେଇ ଶରଗୁଡ଼ିକ ନିଜର ଲକ୍ଷ୍ୟସ୍ଥଳରେ ପହଂଚସାରି ପୁଣି ଫେରିଆସୁଥିଲେ । ରସାଲୁ ଝେଲମ୍‌ର ଦୁର୍ଗକୁ ମୁହୂର୍ତ୍ତିକ ମଧ୍ୟରେ ଅଧିକାର କରିନେଲା । ନିଜର ସାର୍ଥୀମାନଂକ ମଧ୍ୟରୁ ଜଣକୁ ସେଠାକାର ରାଜା କରିଇ ସେ ନିଜେ ଆଗକୁ ବଢ଼ିଲା । ତା'ର ଅନ୍ୟାନ୍ୟ ସାଥୀମାନେ ମଧ୍ୟ ତା' ସହିତ ବାହାରିଲାବେଳକୁ ସେ କହିଲା, "ତୁମେମାନେ ଏଇଠି ରହ । ତୁମେମାନେ ଚାଲିଗଲେ ସେ ଏକାକୀ କେମିତି ରାଜ୍ୟ ଚଳାଇବ ? ସାମ୍ନା ବାଟରେ ମୁଁ ଏକାକୀ ଯାତ୍ରା କରିବି । ମୋ ସହିତ ଦୁଇଜଣ ମାତ୍ର ସାଥୀ ଯିବେ । ଜଣେ ହେଉଛି ମୋର ଘୋଡ଼ା ଫୌଲ୍ଲି ଓ ଅନ୍ୟଜଣକ ହେଉଛି ମୋର ଶୁଆ ଶାରୀ ।"

ରସାଲୁ ସମସ୍ତଂକୁ ପରାଜୟ କରି ଆଗକୁ ଚାଲିଥାଏ । ଏପଟେ ରାଜା ସଲବାନ ବୃଦ୍ଧ ହୋଇ ଆସୁଥାଆଂତି । କେଜାଣି କେତେବେଳେ ଶରୀରରୁ ପ୍ରାଣପକ୍ଷୀ ଉଡ଼ିଯିବ ଓ ସିଂହାସନ ଶୂନ୍ୟ ହୋଇ ରହିଯିବ । ରାଜା ପୁଅ ପଛେ ପଛେ ତା' ପାଖକୁ ନିଜର ସଂବାଦ ପଠାଇଲେ । ସଂବାଦବାହକମାନେ ଖବର ପାଉଥିଲେ ଯେ ରସାଲୁ ଆଜି ଅମୁକ ସ୍ଥାନରେ ଅଛି; କିଂତୁ ସେଠି ଯାଇ ପହଂଚିଲା ବେଳକୁ ରସାଲୁ ସେଠାରୁ ମଧ୍ୟ ଆଗେଇଯାଇ ଅନ୍ୟ ଏକ ସ୍ଥାନରେ ପହଂଚଯାଇଥାଏ । ପିତାଂକ ସଂବାଦ ପୁତ୍ର ପାଖରେ ପହଂଚ ପାରୁନଥିଲା । ଦୂତମାନେ ବିଫଳ ହୋଇ ଫେରିଆସୁଥିଲେ । ତା'ପରେ ଲୁଣା ମଧ୍ୟ ସଂବାଦ ପଠାଇଲା; କିଂତୁ ତାହା ମଧ୍ୟ ରସାଲୁ ପର୍ଯ୍ୟଂତ ପହଂଚିଲା ନାହିଁ । ଶେଷରେ ମାଆ ଇଛରାଁ ନିଜର ପୁଅ ପୂରନର ନାମକୁ ଧ୍ୟାନକରି ରସାଲୁ ପାଖକୁ ସଂବାଦ ପ୍ରେରଣ କଲେ । ଏଥର ଭଗବାନଂକ କୃପାରୁ ଏଇ ଖବର ରସାଲୁ ପର୍ଯ୍ୟଂତ ପହଂଚଗଲା ଓ ସେ ନିଜ ଘର ଆଡ଼କୁ ବାହୁଡ଼ିଲା । ରାଜା ସଲବାନ ନିଜ ପୁଅ ସାନ ଥିଲା ସମୟରେ ତାଂକର ମଂତ୍ରୀ ମୋଚରାମର ଝିଅ ସହିତ ରସାଲୁର ବିବାହର ନିର୍ବନ୍ଧ କରି ଦେଇଥିଲେ । ରସାଲୁ ନିଜ ଘରକୁ ଫେରୁଥିଲା । ସହର ବାହାରେ ଥିବା କୂଅ ନିକଟରେ ପାଣି ନେବାକୁ ଆସିଥିବା କଣୋରୀମାନେ ନିଜ ନିଜ ଭିତରେ ଖେଳକୌତୁକରେ ମାତିଥିଲେ । ସେମାନେ ରସାଲୁକୁ ଭାରି ମନଖୁସିରେ ଦୋହଲି ଦୋହଲି ସେ ବାଟ ଦେଇ ଚାଲିଯାଉଥିବା ଦେଖି ଜଣେ ଝିଅ ଟିପ୍ପଣୀ କଲା :

"ବେ ଘୋଡ଼ୀ ଦେ ଅସବାର  
ସଂଡ଼େଁ ଛାଁ ତେରେ ଉଡ଼ ନ ହୁବା ବିଚ  
ସାଂଭ ଲୈ କୁଡ଼ୀ ଦେ ବାଂଗ  
ହାୟ ବେ ଘୋଡ଼ୀ ଦେ ଅସବାର ।  
ଦେ ସଂଡ଼ୟାଁ ତୋ ଚୈନୂଁ ଫଡ଼ସୀ କସେ ନେ  
ପୁଟନ୍ନ ନହୀଁ ଦେନା ଲାଂଘ ।"

( ଆରେ ଘୋଡ଼ସବାର ! ତୋର ବାଳସବୁ ପବନରେ ଉଡ଼ୁଛି । ତାକୁ ଝିଅମାନଂକ ପରି କୁଂଡେଇ ନେ । ଆରେ ଘୋଡ଼ସବାର, ଯଦି କେହି ଜଣେ ତୋ ବାଳକୁ ଧରିପକାଏ, ତା'ହେଲେ ପାଦେହେଲେ ଆଗକୁ ଯିବାପାଇଁ ଦେବନାହିଁ ।)

ରସାଲୁ ତତ୍‌କ୍ଷଣାତ୍ ଉତ୍ତର ଦେଲା :

"ଜାଁ ତାଁ ଅପନା ମୋଡ଼ ଲେ ବୋଲୀ
ନହୀଁ ତାଁ ହୋଣ ନା ଦେବାଁ ତେରା କାଜ
ଟୁଟ୍ଟେ ଜାସ୍ୟେ ତେରା ଚୂଡ଼ା-ବାଡ଼ା
ଧରୀୟା ରହ ଜାସ୍ୟେ ଜାଜ ।"

(ତୋ କଥା ଫେରେଇ ନେ; ନହେଲେ ମୁଁ ତୋର ବାହାଘର ହେବାକୁ ଦେବନାହିଁ । ତୋର ଚୂଡ଼ୀ ବି ଭାଂଗିଯିବ ଓ ଯୌତୁକ ସବୁ ମଧ୍ୟ ଯେମିତକ ସେମିତ ରହିଯିବ । )

ଝିଅଟିର ନିଜର ଯୌବନ ପାଇଁ ଗର୍ବ ଥିଲା । ତା' ଉପରେ ପୁଣି ସେ ମଂତ୍ରୀର ଝିଅ ଥିଲା । ସେ ଭଲା ତା' କଥାକୁ କେମିତି ଫେରେଇ ନିଅଂତା ? ସେ ଗର୍ବିତ ଚାହାଣିରେ ରସାଲୁ ଆଡ଼କୁ ଦେଖିଲା ଓ ତା'ପରେ ସେ ଆଡ଼କୁ ପିଠି ବୁଲାଇଦେଲା ।

ଘରେ ପହଂଚବା କ୍ଷଣି ରସାଲୁ ତା'ର ପିତାମାତାଂକୁ କହିଲା, "ଯେଉଁଥିପାଇଁ ମୋତେ ଡାକିଛ ଶୀଘ୍ର ସେଇ କାମ ଶେଷ କରିଦିଅ । ମୁଁ ବେଶୀ ସମୟ ତୁମର ପୁରକାଂଥର ବେଷ୍ଟନୀ ଭିତରେ ବଂଦୀ ହୋଇ ରହି ପାରିବନାହିଁ ।" ବାପା-ମାଆ ଭାବିଲେ ପୁଅର ବିବାହ କରିଦେଲେ ଘରକୁ ତା'ର ପତ୍ନୀ ଆସିବ ଓ ତା'ର ଘରେ ମନ ଲାଖିଯିବ । ତା' ପରଦିନ ରାଜା ବରଯାତ୍ରୀ ସଜକରି ମୋଚହ୍‌ମ ଘରେ ପହଂଚିଗଲେ । ଝିଅଟି କନ୍ୟାବେଶରେ ରୂପ ଶୃଙ୍ଗାର କରି ବେଦୀ ଉପରେ ଆସି ବସିଲା । ବ୍ରାହ୍ମଣମାନେ ଦୁଇଜଣଂକର ଲୁଗା କାନିକୁ ଗଂଠି ପକାଇ ବାଂଧିଦେଲେ । ଚାରିଥର ଘେର ବୁଲା ଶେଷ ହେଲା; ଆଉ ଗୋଟିଏ ଘେରା ବାକୀ । ଏଥର କନ୍ୟା ପଛରେ ଓ ବର ଆଗରେ ରହିବା କଥା । ନିଜ ପତ୍ନୀର ଆଗକୁ ଯିବା ପୂର୍ବରୁ ରସାଲୁ ମୁଂଡ ବୁଲାଇ କନ୍ୟାକୁ ଦେଖିଲା । ଚାରିଚକ୍ଷୁର ମିଳନ ହେଲା ଓ ଉଭୟେ ଉଭୟଂକୁ ଚିହ୍ନି ପାରିଲେ । ଆଖି ପିଛୁଳାକେ ରସାଲୁ ଖୋଳାଭିତରୁ ଖଂଡାଟିକୁ କାଢ଼ି ନେଲା ଓ ବିବାହ ଗଂଠିଟିକୁ କାଟି ଦୂରକୁ ଫୋପାଡ଼ି ଦେଲା । ସେ ଅଗଣାରୁ ବିଜୁଳି ବେଗରେ ଛୁଟିଯାଇ ଫୌଲାଦର ପିଠିରେ ଚଢ଼ିଗଲା । ବରଯାତ୍ରୀ ଓ କନ୍ୟା ପକ୍ଷର ସମସ୍ତେ ବୋକାଂକ ପରି ଅନାଇ ରହିଗଲେ । ରସାଲୁ ସେଇଠାରୁ ଅନେକ ଦୂରକୁ ଚାଲିଯାଇଥିଲା । ତାର ପିତା ଡାକ ଛାଡ଼ିଲେ, "କପାଳରେ ଟିକା ଲଗାଇ ଦେଇ ଯା ! ଆଜିଠାରୁ ତୁ ହିଁ ଏଠାକାର ରାଜା ।"

ରାଜା ଯାଉ ଯାଉ ଏକ ଘନ ଅରଣ୍ୟ ଭିତରେ ପହଂଚିଲା । ସେଇଠି ପ୍ରଚଂଡ ଗରମ ପଡ଼ୁଥାଏ; କିଂତୁ ସେ ଏକପ୍ରକାରର ତୀବ୍ର ସୁଗଂଧ ଅନୁଭବ କଲା । କିଛି ବାଟ ଆଗକୁ ଯାଇ ସେ ଏକ ଚଂଦନ ଗଛ ନିଆଁରେ ଜଳିଯାଉଥିବାର ଦେଖିବାକୁ ପାଇଲା । କିଛି ସମୟ ପରେ ଗଛରୁ ଏକ ହଂସ ଉଡ଼ିଆସି ରାଜାର ପାଦତଳେ ଲେଟିଗଲା । ତା' ପରରେ ନିଆଁ ଲାଗିଯାଇଥିଲା । ତାକୁ ଦେଖି ରାଜାର ହୃଦୟ ଦ୍ରବୀଭୂତ ହୋଇଉଠିଲା । ସେ ହଂସଟିକୁ ପଚାରିଲା, "ଗଛରେ ନିଆଁ ଲାଗିବା ସଂଗେ ସଂଗେ ତୁ ଉଡ଼ିଗଲୁ ନାହିଁ କାହିଁକି ?" ହଂସ

କହିଲା, "ଜୀବନସାରା ଯେଉଁ ଗଛର ଫଳ ଖାଉଛୁ, ଯାହାର ଶୀତଳ ଛାଇରେ ମୁଁ ଜୀବନ ବିତାଇଛୁ, ତାକୁ ତା'ର ବିପଦବେଳେ ଛାଡ଼ିଦେଇ ମୁଁ କେମିତି ଚାଲିଯିବି ?" ରସାଲୁ ନିଜେ ସାହାଯ୍ୟ କରିବା ପାଇଁ ଚେଷ୍ଟାକଲା । ନଦୀର ସ୍ରୋତକୁ ସେ ଗଛ ଆଡ଼କୁ ମୁହାଁଇ-ଦେଲା ଓ ଭଗବାନଙ୍କୁ ଗଛଟିର ଦୁଃଖ ନିବାରଣ କରିବା ପାଇଁ ପ୍ରାର୍ଥନା କଲା । ନିଆଁ ଲିଭିଗଲାପରେ ହଂସଟି ଉଡ଼ିଯାଇ ପୁଣି ଗଛରେ ବସିଲା । ହଂସ ଓ ଚନ୍ଦନ ଗଛର ପରସ୍ପର ପ୍ରତି ନିବିଡ଼ ପ୍ରେମ ଦେଖି ରାଜାର ହୃଦୟ ପୂରିଉଠିଲା; କିନ୍ତୁ ସେ ନିଜେ ସମସ୍ତ ପ୍ରେମ, ମମତା ଛିନ୍ନ କରି ଚାଲିଆସିଥିଲା । ରସାଲୁ ଯେମିତି ଆଗକୁ ପାଦ ବଢ଼ାଇଛୁ ହଂସଟି ତାକୁ କହିଲା :

> "କଲ ମୁକଲ୍ଲା ଘୋରେ ପାଲିୟେଁ, କଲ୍ଲେ ତେରେ ରାହ
> କଲ ମୁକଲ୍ଲେ ଜଂଗଲ ଥାମି, କଲ୍ଲା-କଲ୍ଲା ଜା ।"

( ତୁ ଅଂଧାର ଘରେ ଏକା ଏକା ବଡ଼ ହୋଇଛୁ, ତୋ'ର ରାସ୍ତା ନିଃସଂଗ, ନିର୍ଜନ ଜଂଗଲ ଭିତରେ ତୁ ଏକା ଏକା ଚାଲିଯା' । )

ରସାଲୁ ଚାଲିଯାଉଥିଲା । ଜଂଗଲର ଯେମିତି ଅଂତ ନଥିଲା । ପରଦିନ ସକାଳେ ସେ ବାଟରେ ଏକ ସାପ ଦେଖିଲା । ଝଡ଼ରେ ଉଡ଼ୁଥିବା ବାଲି ପଡ଼ି ତା'ର ଆଖି ଅଂଧ ହୋଇ ଯାଇଥିଲା । ସାପଟି ଘୋଡ଼ାର ଟାପୁ ଶବ୍ଦ ଶୁଣି ସେ ବାଟଦେଇ କୌଣସି ମଣିଷ ଯାଉଥିବାର ଅନୁମାନ କଲା । ସେ ମିନତି କଲା :

> "ଏମି ରାହିଁ ଲଂଘାର୍ଦିୟା, ଗଲ୍ଲ ସାଡ଼ୀ ସୁନ ଜା,
> ଦେ ତୁଁ ମେହରିଁ ବାଲଡ଼ା ସାଡ଼ୀ ଅକ୍‌ଖ କଂକର କଢ଼୍‌ଡ଼ ଜା,
> ଧରମିୟୁଁ ଧରମ କମା ।"

( ରେ ବାଟୋଇ, ମୋ କଥା ଶୁଣିଯା' । ତୁ ଯଦି ଦୟାଳୁ ତା'ହେଲେ ମୋ ଆଖିରୁ ବାଲିଗୁଂଡ କାଢ଼ିଦେ । ହେ ଧାର୍ମିକ ବ୍ୟକ୍ତି, ଧର୍ମ ଅର୍ଜନ କରିନେ । )

ସାପ ତ ମଣିଷଜାତିର ଶତ୍ରୁ । କିନ୍ତୁ ଘରଦ୍ୱାର ଛାଡ଼ି ଏତେ ଦୂରକୁ ଆସିଲା ପରେ ରାଜା ବୈରାଭାବ ଭୁଲିସାରିଥିଲା । ରାଜା ବାସୁକୀ ନାଗର ଆଖିରୁ ବାଲିଗୁଂଡ଼ମାନ ନିଜ ହାତରେ କାଢ଼ିଦେଲା । ନାଗସାପର ଆଖି ଭଲ ହୋଇଗଲା । ରାଜା ଯେମିତି ଆଗକୁ ଯିବାପାଇଁ ପାଦ କାଢ଼ିଛୁ, ନାଗସାପ ଫଣାଟେକି ତା' ଆଗରେ ଠିଆହୋଇଗଲା । ଏହା ଦେଖି ରାଜା ପଚାରିଲେ, "ଏ କ'ଣ ? ଉପକାରର ପ୍ରତିଦାନ ?" ନାଗସାପଟି ମୁଂଡ଼ ତଳକୁ ପୋତି ଉତ୍ତର ଦେଲା—"ମୋର ଏତିକି ଅନୁରୋଧ ଯେ ଆଜି ରାତିକ ପାଇଁ ତୁମେ ମୋ ଘରେ ଅତିଥି ହୁଅ ।" ରସାଲୁ ତା'ର ଅନୁରୋଧ ଏଡ଼ାଇ ଦେଇ ପାରିଲା ନାହିଁ । ସାପଟିର ଗୁଂଫାଭିତରେ ନିର୍ଭୀକ-ବୀର ରସାଲୁ ରାତିସାରା ନାଗସାପ ସାଥିରେ ଗୋଟାଏ ପଲଂକରେ ଶୋଇଲା । ତା' ପରଦିନ ସକାଳୁ ସାପଟି ପୁଣି କାହାକୁ ପାଇଲେ ଦଂଶନ କରିବା ଉଦ୍ଦେଶ୍ୟରେ ଘାସ ଭିତରେ ଯାଇ ଲୁଚିଗଲା । ରସାଲୁ ଆପଣା ବାଟରେ ବାହାରିଲା ।

ଜଂଗଲ ଅତିକ୍ରମ କରି ରସାଲୁ ନୀଳ ସହରରେ ପହଂଚିଲା । ସହର ସୀମାରେ ବୁଢ଼ୀଟିଏ ବସିଥିଲା । ସେ କେତେବେଳେ ହସୁଥାଏ ତ ପୁଣି ପରମୁହୂର୍ତ୍ତରେ କାଂଦିଉଠୁଥାଏ । ରସାଲୁ ତା'ର ଦୁଃଖର କାରଣ ପଚାରିଲା; କିଂତୁ ବୁଢ଼ୀଟି ପୂର୍ବଭଳି ଖାଲି ହସୁଥାଏ ଓ କାଂଦୁଥାଏ । ସେ ତୁଂଡ ଫିଟାଇ କିଛି କହୁନଥାଏ । ରସାଲୁ ତାକୁ ବାରଂବାର ପଚାରିବାକୁ ଲାଗିଲା । ଶେଷରେ ବୁଢ଼ୀଟି କହିଲା, "ଏଇ ସହରଟି ଏକ ରାକ୍ଷସର ହାବୁଡ଼ରେ ପଡ଼ିଛି । ରାକ୍ଷସ ପ୍ରତିଦିନ ଜଣେ ଲେଖାଏଁ ମଣିଷ ଭକ୍ଷଣ କରେ । ଅନେକ ଅନେକ ଲୋକ ସହର ତ୍ୟାଗ କରି ଚାଲିଗଲେଣି, ଅନେକ ଲୋକଂକୁ ରାକ୍ଷସ ଖାଇସାରିଲାଣି; ବାକି ଲୋକମାନେ ନିଜନିଜର ମୃତ୍ୟୁର ଦିନ ଗଣୁଛଂତି । ମୋର ସାତପୁଅ ଥିଲେ । ଛଅ ଜଣଂକୁ ରାକ୍ଷସ ଖାଇସାରିଲାଣି । ଆଜି ମୋର ସପ୍ତମ ପୁଅର ପାଳି । ମୁଁ ଏ କଥା ଚିଂତା କରି ହସୁଛି ଯେ ମୁଁ ବଂଚିଯାଇଛି । ପୁଣି ଏହା ଭାବି କାଂଦୁଛି ଯେ ମୋ ଆଖି ଆଗରେ ସାତଜଣ ପୁଅଂକୁ ବଳି ଦେଇଦେଲି ।" ରଜା ଗଛ, ପକ୍ଷୀ ଓ ନାଗସାପର ଉପକାର କରିଥିଲା । ଆଜି ତାକୁ ମଣିଷର ଉପକାର କରିବାପାଇଁ ସୁଯୋଗ ମିଳିଗଲା । ଏଥରର କାମରେ ନିଜର ଜୀବନ ପ୍ରତି ବିପଦର ଆଶଂକା ଥିଲା । ରଜା ସ୍ଥିର କଲା ଯେ ବୁଢ଼ୀର ପୁଅ ବଦଳରେ ସେ ନିଜେ ରାକ୍ଷସର ଭୋଜନ ହେବାପାଇଁ ଯିବ ।

ରସାଲୁ ନିଜର ଘୋଡ଼ା ଉପରେ ଚଢ଼ି ପୁଣି ଜଂଗଲ ଆଡ଼କୁ ବାହାରିପଡ଼ିଲା । ସହରର ଲୋକେ ରାକ୍ଷସର ଭୋଜନ ପାଇଁ ଗାଡ଼ିଏ ରୁଟି ଓ ଗୋଟାଏ ଷଣ୍ଢ ପଠାଉଥିଲେ । ସେସବୁ ମଧ୍ୟ ରଜା ସାଂଗରେ ଥିଲା । ରାକ୍ଷସ ଏକ ଘୋଡ଼ସବାରକୁ ଆସୁଥିବାର ଦେଖି ମନେ ମନେ ଖୁସିହେଲା ଯେ ଆଜି ଅନ୍ୟାନ୍ୟ ଜିନିଷ ସହିତ ଗୋଟାଏ ଘୋଡ଼ା ମଧ୍ୟ ଖାଇବାପାଇଁ ମିଳିବ । ସେ ସର୍ବାପ୍ରଥମେ ଘୋଡ଼ା ଆଡ଼କୁ ହାତ ବଢ଼ାଇଲା; କିଂତୁ ରସାଲୁ ଆଖି ପିଛୁଳାକେ ଖଂଡା କାଢ଼ି ତା'ର ହାତଟିକୁ ହାଣିପକାଇଲା । ରାକ୍ଷସ ଯନ୍ତ୍ରଣାରେ ବିଲବିଲେଇ ଉଠି ନିଜ ଘର ଆଡ଼କୁ ଧାଇଁଲା; କିଂତୁ ତା'ର ଆଉ ରକ୍ଷାର ବାଟ ନଥିଲା । ରାକ୍ଷସ ଗଛ ଝାଡ଼ରେ ଲୁଚିଯାଉଥିଲା; କିଂତୁ ରସାଲୁର ତୀର ଗଛର ଗଣ୍ଡି ଭେଦକରି ତା' ପର୍ଯ୍ୟଂତ ପହଂଚିଯାଉଥିଲା । ସେ ନିଜର ପିଲାମାନଂକୁ ରସାଲୁ ସହିତ ଲଢ଼ିବା ପାଇଁ ପଠାଇଲା; କିଂତୁ ରାଜା ସେମାନଂକ ମଧ୍ୟରୁ କେତେଜଣଂକୁ ଖଂଡାରେ ଟିକିଟିକି କରି ହାଣିପକାଇଲା ଓ କେତେ ଜଣଂକୁ ଦଉଡ଼ିରେ ବାଂଧିପକାଇଲା । ଏହା ଦେଖି ରାକ୍ଷସ ଯାଇ ନିଜ ଘରସଂଧିରେ ସାତଟି ଲୁହାର କଡ଼େଇ ଭିତରେ ଲୁଚିଗଲା । ବୀର ରସାଲୁ ଗୋଟାଏ ଶରରେ ସାତଟିଯାକ କଡ଼େଇ କଣା କରି ରାକ୍ଷସକୁ ଶେଷ କରିଦେଲା । ରାକ୍ଷସର ସାରା ପରିବାରକୁ ହତ୍ୟା କରିଦେଇଥିବାରୁ ରଜାର ସୁନାମ ଚାରିଆଡ଼େ ବ୍ୟାପିଗଲା । ସାରା ସହରର ଲୋକେ ନିଜର ରଜାଂକୁ ନେଇ ରସାଲୁର ଦର୍ଶନ ପାଇଁ ଆସିଲେ । ସହରବାସୀ ରସାଲୁକୁ ନିଜ ପାଖରେ ଅଟକାଇ ରଖିବା ପାଇଁ ଅନେକ ଚେଷ୍ଟାକଲେ; କିଂତୁ ତା' ପାଦରେ ଏଭଳି ଚକ ଲାଗିଥିଲା ଯେ କେଉଁଠି ହେଲେ ସ୍ଥିର ହୋଇ ରହିବା ତା'ପକ୍ଷରେ

ଅସମ୍ଭବ ଥିଲା । ସେଠାକାର ରାଜକୁମାରୀ ରସାଲୁର ରୂପରେ ମୋହିତ ହୋଇପଡ଼ିଲା; କିନ୍ତୁ ରାଜାର ଧ୍ୟାନ ତା' ଆଡ଼କୁ ମୋଟେ ଯାଉନଥିଲା । ରସାଲୁ ଯେମିତି ବାହାରିପଡ଼ିଲା, ରାଜକନ୍ୟା ବ୍ୟଥିତ ହୋଇ କହିଲା :

"ଚନ୍ଦନ ଚୀର୍ରୁଁ, ଚଖା ବହାଁ, ଫୂକ ଲଗାବାଁ ଅଗ୍ଗ
ବେ ସୋହନେ ପରଦେସିୟାଁ, ମୈଁ ମର୍ରାଁ ତେରେ ଗଲ୍ଲ ଲଗ୍ଗ ।"

( ଚନ୍ଦନର କାଠ କଟାଇ ମୁଁ ମୋର ଚିତା ଉପରେ ବସିପଡ଼ିବି, ସେଇଥିରେ ନିଆଁ ଲଗାଇଦେବି; ହେ ରୂପବାନ୍ ବିଦେଶୀ ! ମୁଁ ତୋତେ ଆଲିଙ୍ଗନ ପାଶରେ ନେଇ ମରିଯିବି । )

କିନ୍ତୁ ଏତେ ଗଭୀର ପ୍ରେମର ନିଦର୍ଶନ ମଧ୍ୟ ରାଜାର ପଥରୋଧ କରିପାରିଲା ନାହିଁ । ସେ ମଧ୍ୟ ଏକପ୍ରକାରର ଯୋଗ ସାଧନା କରୁଥିଲା । ତା' ମୁହଁରୁ ଏତିକି ମାତ୍ର ବାହାରିଲା—" ତୁମମାନଙ୍କ ପାଇଁ ଘର-ସଂସାର ଭଲ, ଯୋଗୀମାନଙ୍କ ପାଇଁ ଯାଯାବର ଜୀବନ ଭଲ ।"

ଏଠାରୁ ଯାଇ ରାଜା ଅଟକ ପାଖରେ ଥିବା ନିଲକୂଳରେ ଅବସ୍ଥିତ ସିଆଲକୋଟ ସହରରେ ପହଞ୍ଚିଲା । ଏଠାକାର ରାଜା ଥିଲେ ସିରକପ୍ପ । ସିରକପ୍ପର ଏକ ଅଦ୍ଭୁତ ସଉକ ଥିଲା । ସେ ଆତଯାତ ହେଉଥିବା ବିଦେଶୀ ଯାତ୍ରୀମାନଙ୍କର ମୁଣ୍ଡର ବାଜି ରଖି ପଶା ଖେଳୁଥିଲା ଓ ଛଳକପଟ କରି ବାଜି ଜିଣି ସେମାନଙ୍କର ମୁଣ୍ଡକାଟ କରୁଥିଲା । ଶେଷରେ ଯେତେବେଳେ ରାଜା ସିଆଲକୋଟରେ ପହଞ୍ଚିଲା ତା'ର ଘୋଡ଼ାର ଖୁରା ଏକ କଙ୍କାଳ ଦେହରେ ଝୁଣ୍ଟି ହେଲା । ଯେଉଁ ସହରର ରାସ୍ତାଘାଟରେ ମଡ଼ା ପଡ଼ିଛି, ସେଠାରେ ଯେ ତା'ର ଜୀବନ ସୁରକ୍ଷିତ ନୁହେଁ ଏକଥା ରାଜା ବୁଝିପାରିଲା । ରାଜା ଜାଣିପାରିଲା ଯେ ଏହା ଜୁଆଡ଼ୀ ସିରକପ୍ପର ସହର । ରସାଲୁର ମୃତ୍ୟୁକୁ ଭୟ ନଥିଲା । ସେ ସିରକପ୍ପ ସହିତ ପଶା ଖେଳିବା ପାଇଁ ମନେ ମନେ ଦୃଢ଼ ନିଷ୍ପତ୍ତି କଲା । ସକାଳୁ ରସାଲୁ ରାଜମହଲ ଆଡ଼କୁ ବାହାରିପଡ଼ିଲା । ଏମିତି ରୂପବାନ୍ ଓ ସୁନ୍ଦର ଘୋଡ଼ସବାର ପ୍ରାଣ ରାଜାଙ୍କ ହାତରେ ଚାଲିଯିବ, ଏକଥା ଚିନ୍ତାକରି ନଗରବାସୀ ବ୍ୟଥିତ ହୋଇପଡ଼ିଲେ । ଏକ ସୁନ୍ଦରୀ ଯୁବତୀ ଘୋଡ଼ାର ଲଗାମକୁ ଟାଣିଧରି କହିଲା :

"ନୀଲେ ଘୋଡ଼େ ବାଲିଆ ରାଜା, ନୀବେଁ ନେଜେ ଆ,
ଅଗ୍ଗେ ରାଜା ସିରକପ୍ପ ହୈ, ସିର ଲୈସୀ ଓହ ଲାହ,
ଭଲ ଚାହେଁ ଜେ ଅପନା, ତାଁ ପିଛେ ମୁଡ଼ ଜା ।"

( ନୀଳ ଘୋଡ଼ାରେ ବସିଥିବା ରାଜା, ପାଖକୁ ଆ । ଆଗରେ ରାଜା ସିରକପ୍ପ ଅଛି; ସେ ତୋର ମୁଣ୍ଡ କାଟିନେବ । ଯଦି ନିଜର ହିତ ଚାହୁଁଛୁ ତା' ହେଲେ ପଛକୁ ଫେରିଆ । )

କିନ୍ତୁ ରାଜା ଘୋଡ଼ା ଦେଖିବାରେ ଲାଥ୍ ମାରି ଆଗକୁ ମାଡ଼ିଗ୍ଲେଲି । ରାଜା ରସାଲୁର ସୁଂଦର ରୂପ ଦେଖି ସହରର ଲୋକମାନଂକ ମନ ଦୟାରେ ତରଳିଗଲା । ପ୍ରତ୍ୟେକ ବ୍ୟକ୍ତି ନିଜ ନିଜର ବୁଦ୍ଧି ଅନୁଯାୟୀ ତାକୁ ପଶା-ବାଜି ଜିଣିବାର କୌଶଳ ବତାଇ-ଦେଲେ । କେହି ଜଣେ ତା'ର ସୁରକ୍ଷା ପାଇଁ ଭଗବାନଂକୁ ଡାକିଲା ଓ ମଂତ୍ର ପାଠ କରି ପ୍ରାର୍ଥନା କଲା । ଜଣେ ଲୋକ ଅତି ଆଦରରେ ପାଳିଥିବା ନିଜର ବିରାଡ଼ିକୁ ରାଜାର ଜାମା ମୁଣାରେ ରଖିଦେଲା ଓ କହିଲା :

"ଠହିର ବେ ରାଜା ଭୋଲିୟା, ସାଡ଼ୀ ଇତନୀ ଗଲ୍ଲ ସୁନ ଜା,
ଜଦୋଁ ତାଡ଼ୀ ଖିଡ଼ା ଆ ବନେ, ତେରା ପେଶ ନା ଜାବେ୍ କା,
ଦାହିନା ଦସ୍ତ ଉଠାୟେ କେ ଅପନୀ ଜେବ ତ ପା ।"

( ଆରେ ସରଳମତି ରାଜା, ରହିଯା; ମୋର ଏଇ କଥାଟିକିକ ଶୁଣିଯା' । ଯଦି ତୋ ଉପରକୁ କୌଣସି ବିପଦ ମାଡ଼ିଆସେ ଓ ତୋତେ କୌଣସି ଉପାୟ ନ ଦିଶେ, ତା' ହେଲେ ନିଜର ଡାହାଣ ହାତ ଉଠେଇ ନିଜର ଜାମାମୁଣାରେ ପୂରେଇଦେବୁ । )

ରସାଲୁ ରାଜମହଲକୁ ଯାଇ ଆଜି କେହି ଜଣେ ତୋ ସହିତ ପଶା ଖେଳିବା ପାଇଁ ଆସିଛୁ ବୋଲି ଡାକ ଛାଡ଼ିଲା । ମହଲର ବାରଂଡାରେ ଚଉଦଟି ନାଗରା ବାଜା ରଖାହୋଇଥିଲା । ରାଜାଂକୁ ବାଜି ଲଗାଉଥିବା ବ୍ୟକ୍ତି ପାଇଁ ପଶା ଖେଳିବା ଆଗରୁ ନାଗରା ବଜାଇ ରାଜାଂକୁ ସାବଧାନ କରିଦେବା ଆବଶ୍ୟକ ଥିଲା । ନାଗରାଗୁଡ଼ିକ ଏଭଳି ଭାବରେ ତିଆରି ହୋଇଥିଲା ଯେ ତାକୁ ଥରେ ବଜାଇଲେ ଅନେକ ସମୟ ଧରି ବାଜାର ଶବ୍ଦ ପ୍ରତିଧ୍ୱନିତ ହେଉଥିଲା, ଫଳରେ ଶୁଣିବା ଲୋକର ମୁଂଡ ଘୂରିଯାଉଥିଲା । ମଥା ଘୂରି ଯାଇଥିବା ଅବସ୍ଥାରେ କୌଣସି ବ୍ୟକ୍ତି କ'ଣ ବାଜି ଜିଣିପାରିବ ? ଦ୍ୱାରପାଳ ରସାଲୁକୁ ନାଗରା ପିଟିବା ପାଇଁ ନିର୍ଦ୍ଦେଶ ଦେଲା । ରାଜା ଗୋଟାକ ପରେ ଗୋଟାଏ ନାଗରା ଉପରେ ଏତେ ଜୋର୍‌ରେ ଆଘାତ କଲା ଯେ ବାଜା ସବୁ ଫାଟିଗଲା ଓ ତହିଁରୁ ଟିକିଏ ହେଲେ ଶବ୍ଦ ବାହାରିଲା ନାହିଁ ।

ଦ୍ୱାର ଭିତରକୁ ପ୍ରବେଶ କଲେ ସିରକପ୍‌ର ସତୁରିଜଣ ଝିଅଂକ ଦୋଳମାନ ଝୁଲୁଥିଲା । ଏଇ ଦୃଶ୍ୟ ଯେକୌଣସି ଆଗଂତୁକର ଚିତ୍ତକୁ ସ୍ଥିର ଓ ଏକାଗ୍ର ହେବାକୁ ଦେଉନଥିଲା । ଝିଅମାନେ ରସାଲୁକୁ କହିଲେ, "ଆମକୁ ଦୋଳରେ ଝୁଲାଇଦେଇ ଯାଅ ।" ରାଜା କହିଲେ, "ମୋ ପାଖରେ ଜଣ ଜଣ କରି ଝୁଲାଇବା ପାଇଁ ସମୟ ନାହିଁ । ସମସ୍ତଂକୁ ଏକା ଥରକରେ ଝୁଲାଇ ଦେବି ।" ସତୁରି ଜଣଯାକ ଏକାସାଂଗରେ ଦୋଳ ଉପରେ ଚଢ଼ିଗଲେ । ରସାଲୁ ତାଂକୁ ଜୋର୍ ଝୁଲାଇ ଦୋଳକୁ ଆକାଶ ପର୍ଯ୍ୟଂତ ଠେଲିଦେଲା । ଦୋଳ ତଳକୁ ଆସୁଥିଲା ସମୟରେ ସେ ଦୋଳର ଦଉଡ଼ି ଦେଖିବାରେ ଖଂଡାର ଏକ ଜୋରଦାର ଆଘାତ କଲା । ଦୋଳଟି ମଝିରୁ ଛିଣ୍ଡିଗଲା ଓ ଝିଅମାନେ ଛିଂଛଡ଼ା ହୋଇ ଭୂଇଁରେ ଖଣ୍ଡିଆ-ଖାବରା ହୋଇ ପଡ଼ିଲେ ।

ରସାଲୁ ଦରବାରକକ୍ଷ ଆଡ଼କୁ ଆଗେଇଲା; କିନ୍ତୁ ସେ ପହଞ୍ଚିବା ପୂର୍ବରୁ ଫଣ୍ଡା ନାଗର ଓ ଖଣ୍ଡଆଖାବରୀ ଝିଅମାନଙ୍କ ଖବର ରାଜାଙ୍କ କାନକୁ ପହଞ୍ଚିସାରିଥିଲା । ଏବେ ରସାଲୁର ନୁହେଁ, ରାଜାର ମନ ବିଚଳିତ ହୋଇ ପଡ଼ିଥିଲା । ତା'ର ମନର ଏକାଗ୍ରତା ଭାଙ୍ଗିଯାଇଥିଲା । ବାଜି ଆରମ୍ଭ ହେବା ସମୟରେ ସେ ଡାକଦେଲା :

"ଜାବେ ଦେ ନମ୍ୱେ ଗୁନଣ ଚୌପଡ଼
ରାଜେ ଖେଡ଼ଡ଼ଣ ଦୋ
ଆ ଜୀ ସଈୟେ ହୋଣିୟେ- ତୂ ମେରେ ବଲି ହୋ
ହୁକମ ଜୋ ରାଜେ ସିରକପ୍ପ ଦା, ନରଦାଁ ମନ୍ନନ ସୋ ।"

( ଧୀପର ମିଙ୍ଖି ମିଙ୍ଖି ଆଲୁଅରେ ଦୁଇଜଣ ରାଜା ପଶା ଖେଳୁଛନ୍ତି । ଆ ସଖୀ ଭାଗ୍ୟ, ମୋତେ ସାହାଯ୍ୟ କର । ରାଜା ସିରକପ୍ପର ଆଦେଶ ପଶାକାଠିମାନେ ମଧ୍ୟ ପାଳନ କରନ୍ତି । )

ସିରକପ୍ପ ଠିକ୍ ପଶାକାଠି ଟିଙ୍ଗିାଇବେଳକୁ ରସାଲୁ ଟିପ୍ପଣୀ କଲା, "ରାଜା, ମୂଳରୁ ତ ତୋର ଅଶୁଭ ଲକ୍ଷଣ ଦେଖାଦେଲାଣି । ସବୁ କାର୍ଯ୍ୟ ଭଗବାନଙ୍କ ନାମ ନେଇ ଆରମ୍ଭ କରିବା ଉଚିତ :

"ଜାବେ ଦେ ନମ୍ୱେ ଗୁନଣ ଚୌପଡ଼
ରାଜେ ଖେଡ଼ନ ଦୋ
ଆଜୀ ମାତା ହୋଣିୟେଁ, ତୂ ମେରେ ବଲ୍ଲି ହୋ
ହୁକମ ଜୋ ସଚ୍ଚେ ସାହବ ଦା, ନରଦାଁ ମନ୍ନନ ସୋ ।"

ପଶା ଖେଳିବା ସମୟରେ ରାଜା ନିଜର ରାଣୀ ଓ ଝିଅ ଦୁହିଁଙ୍କୁ ଡାକି ନିଜର ଦୁଇ ପାଖରେ ବସାଇଥିଲା । ରୂପର ପ୍ରଭାବରେ ସେମାନେ ପଶା ଖେଳୁଥିବା ଲୋକର ଧ୍ୟାନ ନିଜ ଆଡ଼କୁ ଆକର୍ଷିତ କରୁଥିଲେ । ପ୍ରତିଦ୍ୱନ୍ଦ୍ୱୀ ରାଣୀ ଆଡ଼କୁ ଚାହିଁଲେ ଝିଅ ପଶାକାଠି ବଦଳାଇ ଦେଉଥିଲା ଓ ଝିଅ ଆଡ଼କୁ ଦେଖିଲେ ରାଣୀ ବୁଲାଇ ଦେଉଥିଲା । କିନ୍ତୁ ରସାଲୁ ଯୋଗୀ ଭଳି ଏକାଗ୍ରଚିତ୍ତ ହୋଇ ବସିଥାଏ । ରୂପରେ ସେ ରାଣୀ ଓ ରାଜକୁମାରୀଠାରୁ ଦୁଇଗୁଣ ସୁନ୍ଦର ଥିଲା । ଖେଳ ଆରମ୍ଭ ହେବାପରେ କୌଣସି କୌଶଳ ଫଳପ୍ରଦ ହେଲା ନାହିଁ । ରସାଲୁ ଯେମିତି ଅଚଳ ସମାଧିରେ ଧ୍ୟାନମଗ୍ନ ହୋଇପଡ଼ିଥିଲା । ରାଜା ସିରକପ୍ପ ପ୍ରଥମ ବାଜି ହାରିଗଲେ ।

ଦ୍ୱିତୀୟ ବାଜି ଆରମ୍ଭ ହେଲା । ରାଣୀ ଓ ରାଜକୁମାରୀ ହାର୍ ମାନି ସେଠାରୁ ଉଠିଗଲେ । ତାଙ୍କ ସ୍ଥାନରେ ଧନ୍ଦା ପଚାରୁଥିବା ଲୋକମାନେ ଆସି ବସିଲେ । ରସାଲୁ ଠିକ୍ ପଶାକାଠି ଚଳାଇବା ପାଇଁ ଚିନ୍ତା କଲା ସମୟରେ ଧନ୍ଦା ପଚାରିବା ଲୋକ କୌଣସି ଏକ କଠିଣ ଧନ୍ଦା ପଚାରିଦେଉଥିଲା । ପ୍ରଥମ ଧନ୍ଦା ହେଲା :

ଅଠ୍ଠ ପତ୍ତନ, ନୌ ବେଡ଼ୟାଁ, ଚୌଦହ ଘୂମ୍ମନ ଘେର,
ଜେ ତୂଁ ରାଜା ଜଗ ସଗ ତାଁ ପାନୀ କତନେ ସେର ।"

ରାଜା ଏକାସମୟରେ ନିଜର ଖେଳ୍ ଚଳାଉ ଚଳାଉ ଧଂଦାର ଉତ୍ତର ମଧ୍ୟ ଦେଲା :

"ଅଠ୍ଠ ପତ୍ତନ ନୌ ବେଡ଼ୟାଁ, ଚୌଦହ ଘୂମ୍ମନ ଘେର,
ଅଂବର ତାରେ ଗିନ ଦସ୍ସୀ, ମୈ ଦସ୍ସାଁ ପାନୀ ଉତନେ ସେର
ଜିନ୍ନୀ ଜଂଗଲ ଲକଡ଼ୀ, ପାନୀ ଉତନେ ସେର ।"

( ଆଠଟି ଘାଟ, ନଅଟି ଡଙ୍ଗା, ଚଉଦଟି ଭଉଁରୀ ଅଛି । ତୁମେ ପ୍ରଥମେ ଆକାଶର ତାରା ଗଣନା କରି କହ, ସେତେ ସେର ପାଣି ନଈରେ ଥିବ । ଜଂଗଲରେ ଯେତେ କାଠ ଅଛି, ନଈରେ ସେତକ ସେର ପାଣି ଅଛି । )

ରାଜାକୁ ଗୋଟାକ ପରେ ଗୋଟାଏ ଧଂଦାର ସମ୍ମୁଖୀନ ହେବାକୁ ପଡ଼ୁଥିଲା; କିନ୍ତୁ ସେ ତା'ଠାରୁ ଜଟିଳ ଉତ୍ତର ଦେଉଥିଲା । ଧଂଦାମାନ ନିଷ୍ଫଳ ହେଉଥିବାର ଦେଖି ଧଂଦା ପଚାରୁଥିବା ଲୋକମାନେ ନିଜର ମୁଂଡ କଥା ଚିଂତା କରିବାକୁ ଲାଗିଲେ । ସେମାନେ ସେଠାରୁ ଖସିଗଲେ ହିଁ ଯାଇ ନିଜର ରକ୍ଷା ବୋଲି ଜାଣିପାରିଲେ । ସିରକପ୍ପ ଦ୍ୱିତୀୟ ବାଜି ମଧ୍ୟ ହାରିଗଲା ।

ଏଥର ଶେଷ ବାଜି ଆରଂଭ ହେବା କଥା । ସିରକପ୍ପ ପାଖରେ ଆହୁରି ଏକ କୌଶଳ ବାକି ଥିଲା । ବାଜି ଆରଂଭ ହେଲାପରେ ସିରକପ୍ପ ନିଜେ ଶିଖାଇଥିବା ଦୁଇଟି ପୋଷା ମୂଷା କାଢ଼ିଲା । ମୂଷା ଦୁଇଟି ପଶାପାଲିରେ ଚଢ଼ି ଗୋଟିଗୁଡ଼ିକ ଏପଟ ସେପଟ କରିଦେଉଥିଲେ । ରସାଲୁ ପାଇଁ ଏବେ ଖେଳ ଓଲଟିଯାଇଥିଲା । କିନ୍ତୁ ହଠାତ୍ ଏକ ଶୁଭକ୍ଷଣରେ କୌଣସି ଏକ ଶୁଭାକାଂକ୍ଷୀ ଲୋକର କହିଥିବା କଥା ତା'ର ମନେପଡ଼ିଗଲା :

"ଠହର ବେ ରାଜା ଖେଲସ୍ୟା, ସାଡ଼ୀ ଏନୀ ଗଲ୍ଲ ସୁନ ଜା
ଜଦୌଁ ଡାଢ଼ୀ ଭୀଡ଼ା ଆ ବନେ, ତେଥୀ ପେଶ ନା ଜାବେ କା
ଦାହିନା ଦସ୍ତ ଉଠାଇ କେ ଅପନୀ ଜେବ ଚ ପା ।"

ରାଜା ନିଜର ଡାହାଣ ହାତଟି ମୁଣାରେ ଭର୍ତ୍ତି କଲା । ଜାମା ମୁଣାରୁ ବିରାଡ଼ିଟି ବାହାରି ଆସିଲା । ସିରକପ୍ପର ମୂଷାମାନେ ଜୀବନବିକଳରେ ଗାତ ଭିତରେ ପଶିଗଲେ । ସିରକପ୍ପ ବିଚଳିତ ହୋଇ କହିଲା :

"ଡଲ୍ ବେ ପାସେ ଡାଲବେଁ, ଇତ୍ଥେ ବସଂଦା ଲୋକ,
ସିରାଁ ଧଡ଼ାଁ । ଦୀୟାଁ ବାଜୀ ଆଁ, ଜେହଡ଼ୀ ସିରକପ୍ପ କରେ ସୋ ହୋଗ ।"

ରସାଲୁ ପଶାକାଠି ଫିଙ୍ଗି କହିଲା :

"ଡଲ ବେ ପାସେ ଡାଲବେଁ, ଇତ୍ଥେ ବସଂଦା ଲୋକ,
ସିରାଁ ଧଡ଼ା । ଦୀଆଁ ବାଜୀଆଁ , ଜିହଡ଼ୀ ରବ୍ବ କରେ ସୋ ହୋଗ ।"

( ରେ ପଣାକାଠି, ଗଡ଼ଯା; ଏଇଠି ମଣିଷମାନେ ବାସକରି ରହଂନ୍ତି । ମୁଂଡ ଓ ଗଂଡର ବାଜି ଲଗିଛି । ଯାହା ଭଗବାନଂକ ଇଚ୍ଛା ତା' ହେବ ।''

ରାଜା ସିରକପ୍‌ପ ମୁଂଡ ବାଜି ହାରିଗଲା । ଠିକ୍ ସେତକବେଳେ ଜଣେ ଲୋକ ଆସି ଖବର ଦେଲା ଯେ ରାଜାର ଝିଅଟିଏ ଜନ୍ମ ହୋଇଛି । ରାଜା ତତ୍‌କ୍ଷଣାତ୍ ସେଇ ଅଲକ୍ଷଣୀକୁ ହତ୍ୟା କରିବା ପାଇଁ ଆଦେଶ ଦେଲେ; କିଂନ୍ତୁ ରସାଲୁ କହିଲା, ''ଯେଉଁ ରାଜା ନିଜର ମୁଂଡ ହରାଇ ସାରିଛି ସେ ବା କେମିତି ଅନ୍ୟର ମୁଂଡ ସଂପର୍କରେ ଆଦେଶ ଦେବ ? ଏଇ ରାଜକୁମାରୀକୁ ମୁଁ ମୋ ସାଥିରେ ନେଇଯିବି ।'' ରସାଲୁ ଏବେ ମଧ୍ୟ ବିବାହବଂଧନରେ ବାଂଧି ହେବା ପାଇଁ ଚାହୁଁ ନଥିଲା । ଆଜି ଜନ୍ମହୋଇଥିବା ଝିଅଟି ଯୁବତୀ ହେଲା ପର୍ଯ୍ୟଂତ ସେ ସ୍ୱାଧୀନ ଭାବରେ ଜୀବନ ବିତାଇପାରିବ । ରସାଲୁ ସିରକପ୍‌ପକୁ ତା'ର ଜୀବନ ଭିକ୍ଷା ଦେଲା; କିଂନ୍ତୁ ସର୍ତ୍ତ ରହିଲା ଯେ ସେ ଭବିଷ୍ୟତରେ ଆଉ କେବେ ଜୁଆ ଖେଳିବ ନାହିଁ । ମହଲ ଭିତରେ ଏତେ ସମୟଧରି ରହିଗଲାପରେ ରସାଲୁକୁ ନିଜର ନିଃଶ୍ୱାସ ରୁଦ୍ଧ ହେଲା ଭଳି ଲାଗୁଥାଏ । ସେ ପୁଣି ମୁକ୍ତ ଆକାଶ ତଳକୁ ଫେରିଆସିଲା । ରସାଲୁ କାରାଗାର ପାଖଦେଇ ଗଲାବେଳେ ବନ୍ଦୀମାନେ ପାଟିକଲେ :

''ହୋର ରାଜେ ମୁର୍ଗାବିୟାଁ, ତୂ ରାଜା ଶାହବାଜ,
ବଂଦୀ ବା ନାଁ ଦେ ବଂଦ ଖଲାସ କର, ତେରୀ ଉମ୍ର ଦରାଜ ।''

( ଅନ୍ୟ ରାଜାଟି ତ କାପୁରୁଷ; ତୁ କିଂନ୍ତୁ ବୀର ରାଜା । ବଂଦୀମାନଂକୁ ବଂଧନରୁ ମୁକ୍ତ କରାଇ ଦେ; ତୁ ଦୀର୍ଘାୟୁ ହେବୁ । )

ରାଜା ନିଜ ହାତରେ ବନ୍ଦିଶାଳାର ଦ୍ୱାର ଖୋଲିଦେଲେ । କଇଦୀମାନେ ରାଜା ରସାଲୁକୁ ଆଶୀର୍ବାଦ କରି ବାହାରିଗଲେ । ରାଜା ସେଠାରୁ ଚାଲିଆସି ଖେଡ଼ୀ-ସୁରତୀ ପାହାଡ଼ରେ ପହଂଚିଲା । ସେଇଠି ସେ ଏକ ମହଲ ନିର୍ମାଣ କଲା । ମହଲ ସମ୍ମୁଖରେ ଏକ ଆଂବଗଛରା ରୋପଣ କରି କହିଲା, ''ଯେଉଁଦିନ ଆଂବଗଛରେ ବଉଳ ଧରିବ ସେଦିନ ରାଜକୁମାରୀ କୋକଳାଁର ଦେହରେ ଯୌବନ ଆସିବ । ତା'ପରେ ଯାଇ ମୁଁ ତା'କୁ ବାହାହେବି ।''

ରସାଲୁ ଦିନେହେଲେ ଥିର ଧରି ଘରେ ରହିପାରିଲା ନାହିଁ । ତାକୁ ତ ଶିକାରରୁ ଘଡ଼ିକ ପାଇଁ ଅବସର ମିଳୁନଥିଲା । ଯେତେବେଳେ ମଧ୍ୟ ତାକୁ ଟିକିଏ ଅବସର ମିଳୁଥିଲା ସେ ଅନ୍ୟ ଏକ ବିପଜ୍ଜନକ କାମରେ ମାତିଯାଉଥିଲା । ଆଂବଗଛରେ କେବେ ବଉଳ ଆସିଲା, କେବେ କୋକଳାଁ ଯୁବତୀ ହେଲା, ତା'ର ଖିଆଲ ନଥିଲା । ରାଜା ନିଜ କାମରେ ଭୋଳ ଥିଲା । ତାର ମହଲରେ କୋକଳାଁ ବ୍ୟତୀତ ଅନ୍ୟ କୌଣସି ପ୍ରାଣୀ ପ୍ରବେଶ କରି ନଥିଲେ । ବିଚାରୀ କୋକଳାଁ ସମବୟସ୍କ କୌଣସି ପୁରୁଷ କିଂବା ସ୍ତ୍ରୀଲୋକ ସହିତ କଥାଭାଷା ହେବା ପାଇଁ ଛଟପଟ ହେଉଥିଲା । ରାଜାର ଶିରାପ୍ରଶିରାରେ ଶକ୍ତିର ନାହିଁ ନଥିବା

ପ୍ରବାହ ବହୁଥିଲା । ନଜର ଶକ୍ତ ସମ୍ମୁଖରେ କୋକଲାଁର ଯୌବନ ତାକୁ ନହାତ ନଗନ୍ୟ ମନେହେଉଥିଲା । ଏହ କାରଣରୁ ରାଜା ଓ ରାଣୀ ମଧ୍ୟରେ କେବେହେଲେ ପ୍ରେମର ଅଂକୁରୋଦ୍‌ଗମ ହୋଇପାରଲ ନାହିଁ । ପରସ୍ପର କଥାଭାଷା ହେବା ତ ଦୂରର କଥା, ସେମାନେ ଦୁହେଁ କେବେହେଲେ ଏକାଠି ବସି ନଥିଲେ । ଉଭୟେ ପରସ୍ପର ପ୍ରତ ଅଜଣା ହୋଇ ରହଥିଲେ ।

ଦନକର କଥା । ରାଜା ରସାଲୁ ଶିକାର କରବା ପାଇଁ ବାହାରଯାଇଥିଲା । ସେ ଯିବା ପରେ ଜଣେ ରାଜା ଶିକାର କରୁ କରୁ ରସାଲୁର ମହଲ ଆଡ଼କୁ ଚାଲଆସିଥିଲ । ଛାତ ଉପରେ ବସିରହ କୋକଲାଁ ଏକା ଏକା ଆଖପାଖର ମନୋହର ଦୃଶ୍ୟ ଦେଖୁଥାଏ । ତଳେ ଜଣେ ଅଚହ୍ନା ଲୋକକୁ ଦେଖି ସେ କହଲ :

"ମହଲାଁ ହେଠ ଫିରଂ ଦସ୍ତା, ସାଧ ଫିରେଁ କେ ଚୋର ।"

( ଆରେ ମହଲ ତଳେ ବୁଲୁଥିବା ଲୋକ, ତୁ ସାଧୁ ନା ଚୋର ? )

ରାଜା ତାକୁ ଉତ୍ତର ଦେଲ :

"ଚୋରାଁ ମୈଲେ କପଡ଼େ, ସାଧାଁ ନବେଁ ନ କୋର ।"

( ଚୋରମାନେ ମଇଳା ବସ୍ତ୍ର ଧାରଣ କରଂତ; ସାଧୁମାନଂକର ସଂପୂର୍ଣ୍ଣ ନୂଆ ଥାଏ । )

ତଳେ ଥିବା ରାଜାର ନାମ ଥିଲା ହୋଡ଼ୀ । ସେ କୋକଲାଁର ପ୍ରସ୍ଫୁଟିତ ନବ-ଯୌବନ ଦେଖି ଆସକ୍ତ ହୋଇପଡ଼ଲା । ତା' ମୁହଁରୁ ଅକସ୍ମାତ୍ ବାହାରଗଲ :

"ଅମ୍ବିୟାଁ ଦାଖାଁ ପକ୍‌କୀୟାଁ, ଚୋ ଚୋ ପୈନ ଅନାର ।"

( କଞ୍ଚା ଫଳ ପାଚଗଲଣି, ଡାଳଂକରେ ରସ ପୂରଗଲଣି । )

କୋକଲାଁ ଏପର୍ଯ୍ୟଂତ ନଜର ସତୀତ୍ୱ ବଜାୟ ରଖିଥାଏ । ସେ କହଲ :

"ଏସା କୋଇ ନ ଜମ୍ମିୟା ଜୋ ଆବେ ରାଜେ ଦେ ଦରବାର ।"

( ଏମିତ କେହ ଜନ୍ମ ହୋଇ ନାହାଂନ୍ତ ଯିଏ ରାଜାର ଦରବାରକୁ ଚାଲଆସିବ । )

ହୋଡ଼ୀ ମହଲ ଭିତରକୁ ଯିବା ପାଇଁ ଇଚ୍ଛା ବ୍ୟକ୍ତ କଲ । ମହଲର ଫାଟକରେ ପାହାଡ଼-ପ୍ରାୟ ପଥରଟିଏ ରଖାହୋଇଥିଲ । ତାକୁ ଘୁଞ୍ଚାଇ ଦେଇ ରସାଲୁ ଭିତରକୁ ଯାଉଥିଲା । ହୋଡ଼ୀ ଅନେକ ବଳ ପ୍ରୟୋଗ କଲେ ସୁଦ୍ଧା ପଥରଟିକୁ ଟିକିଏ ମଧ୍ୟ ଘୁଞ୍ଚାଇ ପାରଲ ନାହିଁ । ହୋଡ଼ୀର ପକ୍ଷୀ ପାଲଟି ଯାଇ କୋକଲାଁ ପାଖକୁ ପହଂଚଯିବା ପାଇଁ ଇଚ୍ଛା ହେଉଥାଏ; କିଂତୁ ତାହା ତା' ପକ୍ଷରେ ସାଧ୍ୟାତୀତ ଥିଲା । ସେ କୋକଲାଁକୁ ଦଉଡ଼ିଟିଏ ଝୁଲାଇ ଦେବାପାଇଁ ଅନୁରୋଧ କଲା । ଶେଷରେ କୋକଲାଁର ହୃଦୟ ତରଳଗଲ । ସେ ନଜେ ବ ତ ନସଂଗ ଜୀବନ ଅତବାହତ କର କାହା ସହତ କଥାଭାଷା କରବା ପାଇଁ ବ୍ୟାକୁଳ ହୋଇପଡ଼ୁଥିଲ । କୋକଲାଁ ଦଉଡ଼ି ଫିଙ୍ଗିଦେଲାରୁ ରାଜା ହୋଡ଼ୀ ଉପରକୁ

ଚଢ଼ିଗଲା । ତା'ପରେ ଆଉ ବଚ୍ଛୁଶ୍ରୀ କୋକଲାଁ ନିଜର ସତୀତ୍ୱରକ୍ଷା କରିପାରିଲା ନାହିଁ । ରସାଲୁ ଜଂଗଲ ଭିତରେ ଶିକାରରେ ବ୍ୟସ୍ତ ଥିଲା । ଏପଟେ ରଂଗମହଲରେ କୋକଲାଁ ରାସକ୍ରୀଡ଼ାରେ ମାତିଥିଲା । ତା' ପରଦିନ ଯେମିତି ହୋଡ଼ୀ ଚାଲିଯିବାକୁ ଉଦ୍ୟତ ହେଲା, କୋକଲାଁ କାନ୍ଦି ଉଠିଲା । ହୋଡ଼ୀ ତା'ର ଲୁହ ପୋଛିଦେଲାବେଳେ କୋକଲାଁର କଜ୍ଜଳ ତା' ହାତରେ ଲାଗିଗଲା । ରାଜା ପ୍ରତିଜ୍ଞା କଲା, "ମୁଁ ଖୁବ୍ ଶୀଘ୍ର ଫେରିଆସିବି । ଯେତେ ସମୟ ତୋ ପାଖରୁ ଦୂରରେ ରହିବି, ସେତେବେଳେ ପର୍ଯ୍ୟନ୍ତ ମୁଁ ତୋ'ର କଜ୍ଜଳକୁ ହାତରୁ ଲଭିଯିବା ପାଇଁ ଦେବି ନାହିଁ । ମୁଁ ଏଇ ହାତରେ ନା ଖାଇବି, ନା ପିଇବି, ନା ଏଇ ହାତକୁ ଧୋଇବି । ଏଇ ହାତରେ କିଛି ମଧ୍ୟ କରିବି ନାହିଁ ।

ରାଜା ରସାଲୁ ଘରକୁ ଫେରିଆସି ରାଣୀର ରଂଗଢଂଗରେ ପରିବର୍ତ୍ତନ ଲକ୍ଷ୍ୟ କଲା । ମୁଂଡର ବେଣୀ ମୁକୁଳା ହୋଇଯାଇଥାଏ । ହାର ଛିଂଡିଯାଇଥାଏ । ଶେଯ ହୁଗୁଳା ହୋଇ ଝୁଲିଯାଇଥିଲା । ରାଜା କହିଲା :

"କିନ୍ନ ମେରା ଖୂଆ ଗେଡ଼ିଆ, ରାନୀ କିସନେ ଭନ୍ନୀ ନିସାର
ଘଡ଼ିଯେଁ। ପାନୀ କିସ ଲ୍ୟା; କିସ ସୁଟ୍ଟେ ଖଂଧାର
କୌନ ମହଲାଁ ବିଚ ଦୌଡ଼ିଯ୍ୱା, ମହଲୀ ପଈ ଧମକାର
ସେଜ ମେରୀ ଲେଟିଯ୍ୱା, ଢିଲ୍ଲୀ ପଈ ନିବାର ।"

( ରେ ରାଣୀ, ମୋର କୂଅକୁ କିଏ ବ୍ୟବହାର କଲା, କିଏ ମୋର ଦଉଡ଼ି ଛିଂଡାଇ ଦେଲା ? ମାଠିଆରୁ ପାଣି କିଏ ଢାଳିଲା ? ସେଥିରେ କିଏ ଛେପ ପକାଇଲା ? ମହଲ ଭିତରେ କିଏ ଦୌଡ଼ୁଥିଲା, ଯାହାର ପାଦଶବ୍ଦ ଶୁଣାଯାଇଥିଲା ? ମୋ ବିଛଣାରେ କିଏ ଶୋଇଥିଲା ? ଖଟର ଦଉଡ଼ି ହୁଗୁଳା ହୋଇଯାଇଛି ? )

ରାଣୀ ଖୁବ୍ ଅଳ୍ପଦିନ ଭିତରେ ବୁଦ୍ଧିମତୀ ପାଲଟିଯାଇଥିଲା । ସେ ଚମତ୍କାର ଭାବରେ ଉତ୍ତର ଦେଲା :

"ମୁଁ ନିଜେ କୂଅ ବ୍ୟବହାର କରିଛି, ମୁଁ ନିଜେ ଦଉଡ଼ିକୁ ଛିଂଡାଇ ଦେଇଛି । ମାଠିଆରୁ ପାଣି ମୁଁ ନିଜେ ହିଁ କାଢ଼ିଛି । ମୁଁ ନିଜେ ଛେପ ପକାଇଛି । ମଇନା ମୋର ବେଣୀ ଖୋଲି ଦେଇଛି; ଶୁଆ ହାର ଛିଂଡାଇ ଦେଇଛି । ମୁଁ ପାଗଳୀ ପରି ଦୌଡ଼ିଥିଲି, ସେଇଥିପାଇଁ ମହଲର ଚାଲିଗୁ ଦବିଯାଇଛି । ପେଟବ୍ୟଥାର ଯନ୍ତ୍ରଣାରେ ମୁଁ ହିଁ ନିଜେ ଶେଯ ଉପରେ ଶୋଇଥିଲି । ସେଇଥିପାଇଁ ଦଉଡ଼ିମାନ ହୁଗୁଳା ହୋଇଯାଇଛି ।"

ରାଜା ସେତେବେଳେ ଚୁପ୍ ରହିଗଲେ ସୁଦ୍ଧା ଆଜି ତା' ମନ ସନ୍ଦିହାନ ହୋଇ ଉଠିଥିଲା । ଆଜି ତାକୁ ରାଣୀ ତା' ନିଜର ହାତମୁଠାରୁ ବାହାରିଯାଇଥିବାର ମନେ ହେଉଥିଲା । ତା'ର ଯୌବନ ଏକ ଅଲୌକିକ ଅଗ୍ନିଶିଖାର ପ୍ରକୋପରେ ଦହନ ହେବାକୁ ଆରମ୍ଭ କଲା । ତା' ପରଦିନ ସକାଳେ ସେ ପାହାଂଡାରୁ ଉଠି ଶିକାର ଉଦ୍ଦେଶ୍ୟରେ ବାହାରିଗଲା; କିନ୍ତୁ ଏବେ ତା'ର ଏକାଗ୍ରତା ଭାଂଗିଯାଇଥିଲା । ତା'ର

ଲକ୍ଷ୍ୟ ବ୍ୟର୍ଥ ହେଉଥିଲା । ତା'ର ମନେହେଉଥିଲା ଯେମିତି ତା'ର କୋଠା ଭିତରେ ବାଲିଗୁଂଡ଼ ପଶିଯାଇଛି । କେହି ଜଣେ ଅଦୃଶ୍ୟ ଶତ୍ରୁ ତା' ନିଜ ଭିତରେ ଛକି ବସିଛି । ସେ ଦ୍ୱିପହର ସମୟରେ ଘର ଆଡ଼କୁ ଫେରିବାକୁ ଲାଗିଲା । ତୃତୀୟ ପ୍ରହରରେ ସେ ମହଲ ନିକଟରେ ପହଂଚି ଦେଖିଲା ଯେ ଜଣେ ଲୋକ ଦଉଡ଼ି ସାହାଯ୍ୟରେ ମହଲରୁ ତଳକୁ ଓହ୍ଲାଉଛି ଓ ମହଲ ଉପରେ ଛିଡ଼ା ହୋଇ କୋକଲାଁ ତାକୁ ବିଦାୟ ଜଣାଉଛି । ରାଜା କ୍ରୋଧରେ ନିଜକୁ ସମ୍ଭାଳି ପାରିଲା ନାହିଁ । କିନ୍ତୁ ସେ ନିଜର ଉତ୍ତେଜିତ ମନକୁ ସଂଯମ କରି ତା'କୁ ଆହ୍ୱାନ କଲା । ଏଥର ହୋଡ଼ୀ ଓ ରସାଲୁ ମୁହାଁମୁହିଁ ହେଲେ । ରସାଲୁ କହିଲା, "ଆଜି ତୋତେ ପ୍ରଥମ ସୁଯୋଗ ଦେଲି । ଆକ୍ରମଣ କର ।" ହୋଡ଼ୀ ଶର ନିକ୍ଷେପ କଲା; କିନ୍ତୁ ଏଇ ମାତ୍ର ଶରୀର ସହବାସ ଉପଭୋଗ କରି ଆସିଥିବା ହୋଡ଼ୀର ଶରରେ ଠିକ୍‌ଏ ହେଲେ ଶକ୍ତି ନଥିଲା । ରସାଲୁ ତା'ର ଶରକୁ ଦୂରକୁ ଛିଂଚିଡ଼ ଦେଲା । ରସାଲୁ କହିଲା, "ଠିକେ ଦମ୍ ମାରିନେ । ଆଉ ଥରେ ଚେଷ୍ଟା କର ।" ହୋଡ଼ୀ ଆଉ ଏକ ଶର ଛାଡ଼ିଲା । ରସାଲୁ ତାହାକୁ ମଧ୍ୟ ଢାଲ ଦେହରେ ଅଟକାଇ ଦେଲା । ରସାଲୁର ଏକାଗ୍ରତା ଏପର୍ଯ୍ୟଂତ ଅବିଚଳିତ ଥିଲା । ସେ ଥରେ ମାତ୍ର ଆକ୍ରମଣ କଲା ଓ ହୋଡ଼ୀ ଦୁଇଖଂଡ ହୋଇ ତଳେ ଗଡ଼ିପଡ଼ିଲା ।

କୋକଲାଁ ଉପରେ ଛିଡ଼ା ହୋଇ ଏ ସବୁ ଦେଖୁଥିଲା । ସେ ଏବେ ତା'ର ପାଳି ବୋଲି ଜାଣିପାରିଲା । ସେ ରଂଗମହଲର ଗ୍ରୁଡି ଉପରୁ ତଳକୁ ଡେଇଁପଡ଼ିଲା । ରସାଲୁ ନିଜ ହାତରେ ହୋଡ଼ୀ ଓ କୋକଲାଁର ଶବକୁ ନିଜ ଘୋଡ଼ା ଦେହରେ ବାଂଧିଦେଲା ଓ ଘୋଡ଼ାକୁ ଜଂଗଲ ଆଡ଼କୁ ଝଂପଟାଇ ଦେଲା । ବିଦାୟ ମୁହୂର୍ତ୍ତରେ ସେ ଏତିକି ମାତ୍ର କହିଲା, "ସଖା ଫୌଲାଦୀ, ତୋର ମୋର ଏକାସାଥିରେ ଏତିକି ବାଟ ଆସିବାର ଥିଲା । ଏବେ ମୋତେ ମୋର ଜୀବନର ଗତି ବଦଳାଇବାକୁ ପଡ଼ିବ ।"

ଏବେ ତା'ର ପିତାମାତାଂକ କଥା ମନେପଡ଼ିଲା । ତା' ଛଡ଼ା ଯାହାକୁ ସେ ଘେରା-ବୁଲିଲାବେଳେ ବେଦୀରେ ଛାଡ଼ି ଦେଇ ଆସିଥିଲା, ତା'ର କଥା ମଧ୍ୟ ମନେ ପଡ଼ିଲା । ତାର ମନେହେଲା ଯେମିତି ସିଆଲକୋଟ ତାକୁ ଡାକୁଛି । ସେ ନିର୍ଜନ ମହଲର ଦୁଆରରେ ପଡ଼ିଥିବା ପାହାଡ଼ ପରି ବିରାଟ ପଥରଟିକୁ ଘୁଞ୍ଚାଇ ଦୂରକୁ ହଟାଇଦେଲା । କବାଟ ଖୋଲିଦେଲା; ନିଂଚୁ ନିଜେ ସେଇ ଅବସ୍ଥାରେ ପଛକୁ ବୁଲିପଡ଼ିଲା, ନିଜର ସହର ଅଭିମୁଖେ !

---

ବଳବନ୍ତ ଗାର୍ଗୀ

# ଦୁଲ୍ଲା ଭଟ୍ଟୀ

ସମ୍ରାଟ୍ ଆକବରଙ୍କ ଅମଳର କଥା । ଲାହୋର ସହର ନିକଟରେ ଥିବା ସାଂଦଲବାର ଅଂଚଳର ମୁସଲମାନ ଭଟ୍ଟୀ ରାଜପୁତ୍ରମାନେ ସମ୍ରାଟଙ୍କୁ ଖଜଣା ନଦେବା ପାଇଁ ନିଷ୍ପତ୍ତି କରିଥିଲେ । ଶେଷରେ ବିରକ୍ତ ହୋଇ ମୋଗଲ ସୈନ୍ୟ ମାଡ଼ିଆସିଲେ ଓ ସର୍ଦ୍ଦାର ଫରିଦ ଓ ତା'ର ପିତାଙ୍କୁ ଧରିନେଲେ । ତାଙ୍କର ହାତଗୋଡ଼ ବାନ୍ଧି ଆକବରଙ୍କ ସମ୍ମୁଖକୁ ଅଣାଗଲା ।

ସମ୍ରାଟଙ୍କୁ ଫରିଦ ଟେକଠୋକ ଜବାବ ଶୁଣାଇଦେଲା ଓ ମୋଗଲମାନଙ୍କୁ ମୁହେଁ ମୁହେଁ ଗାଳିଦେଲା । ସମ୍ରାଟ୍ ରାଗରେ ଜଳିଗଲେ । ସେ ଆଦେଶ ଦେଲେ, "ଘାତକ ! ଏଇ ବିଦ୍ରୋହୀମାନଙ୍କର ମୁଂଡ କାଟି କରି ବଡ଼ ଦ୍ୱାର ଉପରେ ଝୁଲାଇଦିଅ । ତାଂକ ଦେହରୁ ଚୃଲି ଉତାରି ନେଇ ତା'ଭିତରେ କୁଂଡା ଭର୍ତ୍ତି କରିଦିଅ ।

ବାପ ପୁଅ ଉଭୟଙ୍କୁ ହତ୍ୟା କରାଗଲା । ସେଇ ସମୟରେ ଫରିଦର ସ୍ତ୍ରୀ ଲଧିଧୀର ପାଞ୍ଚ ମାସର ଗର୍ଭ ଥିଲା । ଚାରିମାସ ପରେ ଏକ ରବିବାରଦିନ ତା'ର ପୁଅ ଜନ୍ମହେଲା । ତା'ର ନାମ ରଖାହେଲା ଦୁଲ୍ଲା ।

ଦୁଲ୍ଲାର ମୁଖମଂଡଳ ଉଜ୍ଜ୍ୱଳ ଥିଲା । ଚଉଡ଼ା କପାଳ, ଭସା ଆଖି ଓ ତା'ର ସୌଂଦର୍ଯ୍ୟ ଦେଖି ଧାଈ ପ୍ରଶଂସା କରିବାକୁ ଲାଗିଲା । ତା'ର କପାଳ ଦେଖି ସେ କହିଲା, "ଏଇ ବୀର ବାଳକ ତା' ପିତୃହତ୍ୟାର ପ୍ରତିଶୋଧ ନେବ ।"

ମା' ଖୁସି ହୋଇ ପୁଅ ମୁଂଡରେ ସୁନା ମୋହର ବୁଲାଇଲା । କିଂତୁ ତା' ସାଂଗେ ସାଂଗେ ତା'ର ହୃଦୟ ଭୟରେ ଥରିଉଠିଲା ।

ସେଇଦିନ ଆକବର ବାଦଶାହଙ୍କ ପ୍ରାସାଦରେ ମଧ୍ୟ ଏକ ରାଜକୁମାର ଜନ୍ମଗ୍ରହଣ କଲା । ତା'ର ନାମ ରଖାଗଲା ଶେଖୁ ଓ ସେ ପରେ ଜାହାଂଗୀର ନାମରେ ପ୍ରସିଦ୍ଧ ହୋଇଥିଲା । ସମ୍ରାଟଙ୍କର କାମନା ଥିଲା ଯେ ତାଂକର ପୁଅ ବଡ଼ ହୋଇ ନ୍ୟାୟବାନ୍ ଓ ବୀରପୁରୁଷ ହେବ । ଜ୍ୟୋତିଷମାନେ ରାଶି-ନକ୍ଷତ୍ର ଗଣନା କରି କହିଲେ, "ହୁଜୁର ! ଆପଣ ଦାନ ଧର୍ମ

କରଂନ୍ତୁ ଓ ଲୋକମାନଂକର ସେବା କରଂନ୍ତୁ । ପୁଣି ନିଜ ରାଜ୍ୟ ଭିତରେ ଏପରି ଏକ ମାଆର ସନ୍ଧାନ କରଂନ୍ତୁ, ଯାହାର ଠିକ୍ ସେଇଦିନ ପୁଅ ଜନ୍ମ ହୋଇଥିବ । ରାଜକୁମାର ଯଦି ସେଇଭଳି ମାଆର ଦୁଧ ପିଇ ବଡ଼ ହୁଏ, ତା'ହେଲେ ସେ ବଡ଼ ହେଲେ ବୀର ଓ ଅଜେୟ ହେବ ।"

ସମ୍ରାଟ୍ ଚାରିଆଡ଼େ ସନ୍ଧାନ ନେଲେ । ଜଣେ ବୁଲା ସନ୍ନ୍ୟାସୀ ଆସି ଦରବାରରେ ଜଣାଇଲା, "ସମ୍ରାଟ୍ ! ଯେଉଁ ଫରିଦ ଭଟ୍ଟୀକୁ ତୁ ହତ୍ୟା କରିଥିଲୁ ତା'ର ସ୍ତ୍ରୀ ଯୁବତୀ ଓ ନିର୍ଭୀକ ଅଟେ । ପୁରୁଷମାନଂକ ଭଳି ସେ ସାହସୀ । ଯେଉଁ ରବିବାର ଦିନ ରାଜକୁମାର ଜନ୍ମ ହେଲା, ଠିକ୍ ସେଇଦିନ ତା' ଘରେ ମଧ୍ୟ ଏକ ପୁଅ ଜନ୍ମ ହୋଇଛି ।"

ଏହା ଶୁଣି ସମ୍ରାଟ୍ ବହୁତ ଆନଂଦିତ ହେଲେ । ସେ ସେଇ ବୀର ମାଆକୁ ନିଜ ପାଖକୁ ଡକାଇବା ବଦଳରେ ଶେଖୂକୁ ରାଜକର୍ମଚାରୀମାନଂକ ସାଥିରେ ତା' ପାଖକୁ ପଠାଇ ଦେଲେ । ଲଧିଧୀ ଉପରେ ରାଜକୁମାରର ଲାଳନପାଳନର ଭାର ଦିଆଗଲା ଓ ତା' ପାଇଁ ଏକ ସୁଂଦର ପ୍ରାସାଦ ନିର୍ମାଣ କରି ଦିଆହେଲା । ଶେଖୂ ଓ ଦୁଲ୍ଲା ଦୁଇଜଣଯାକ ଦୁଇ ଭାଇଭଳି ଲଧିଧୀର ଦୁଧ ପିଇ ବଡ଼ ହେଲେ । ସେମାନେ ଏକାଠି କୁସ୍ତି ଲଢ଼ୁଥିଲେ, ଧନୁଚାଳନା କରୁଥିଲେ ଓ ଘୋଡ଼ା ଚଢ଼ୁଥିଲେ । କିଂତୁ ପ୍ରତ୍ୟେକ ଖେଳରେ ଦୁଲ୍ଲା ସବୁବେଳେ ଶେଖୂକୁ ପଛରେ ପକାଇ ଆଗେଇଯାଉଥିଲା ।

ଉଭୟଂକର ବୟସ ବାରବର୍ଷ ହେଲା ପରେ ଆକବର ଶେଖୂ ଓ ଦୁଲ୍ଲାକୁ ଦରବାରକୁ ଡକାଇଲେ । ଆଦେଶ ଦିଆହେଲା ଯେ ବଡ଼ ପଡ଼ିଆରେ ତଂବୁ ପୋତି ସେ ଦୁହିଂକର ଶରଚାଳନା ପ୍ରତିଯୋଗିତା ହେବ । ସାରା ସହରର ଲୋକେ ଏଇ ପ୍ରତିଯୋଗିତା ଦେଖିବା ପାଇଁ ଜମାହୋଇଗଲେ । ଚିହ୍ନିବା ପାଇଁ ଯେମିତି ଭୁଲ ନ ହୁଏ, ସେଇଥିପାଇଁ ତାଂକର ଗୁରୁମାନେ ଦୁଇଜଣଂକ ହାତରେ ଭିନ୍ନ ଭିନ୍ନ ରଂଗର ଶର ଦେଲେ । ଶେଖୂର ଶର ଏପଟେ ସେପଟେ ଚାଲିଯାଉଥିଲା; କିଂତୁ ଦୁଲ୍ଲାର ଶର ଯାଇ ଠିକ୍ ଲକ୍ଷ୍ୟସ୍ଥଳକୁ ଭେଦ କରୁଥିଲା । ତା'ପରେ ଘୋଡ଼ାଚାଳନା ଓ ଖଂଡାଚାଳନା ପ୍ରତିଯୋଗିତା ହେଲା । ପ୍ରତ୍ୟେକ ଥର ଦୁଲ୍ଲା ଜିଣିଗଲା ।

ବାଦଶାହଂକ ମୁଖମଂଡଳରେ ବିଷଣ୍ଣତାର ଛାୟା ଖେଳିଗଲା ଓ ତାଂକର ହୃଦୟ ବ୍ୟଥିତ ହୋଇ ଉଠିଲା । ସେ ଲଧିଧୀକୁ ଡକାଇ ଆଣି ପଚାରିଲେ, "ସତ କହ, କଥା କ'ଣ ? ମୋ ପୁଅ ସବୁବେଳେ କାହିଁକି ହାରିଯାଉଛି ? ତୁ ତା'କୁ ଦୁଧ ପିଆଇଥିଲୁ ନା ନାହିଁ ? ତୋ'ର ଯଦି ପ୍ରାଣ ପ୍ରତି ମୋହ ଅଛି, ତା'ହେଲେ ସତ କହ ।"

ଲଧିଧୀ ହାତଯୋଡ଼ି କହିଲା, "ମୁଁ ତାକୁ ପୁଅଭଳି ପାଳିଛି । ମୋ ନିଜର ଦୁଧ ପିଆଇଛି । ମୋର ଦୋଷ ଏତିକି ଯେ ଦୁଲ୍ଲାକୁ ମୁଁ ମୋର ଡାହାଣ ସ୍ତନରୁ ଓ ରାଜକୁମାରକୁ ମୋର ବାମ ସ୍ତନରୁ ଦୁଧ ପିଆଇଛି ।"

ସମ୍ରାଟ୍ କିଛି ସମୟ ଚିନ୍ତା କରିବା ପରେ କହିଲେ, "ତୋର ଦୋଷ ମୁଁ କ୍ଷମା କରୁଛି; କାରଣ ତୁ ରାଜକୁମାରକୁ ପାଳନ କରିଛୁ । ତୋ'ର ଏଇ କାମ ପାଇଁ ମୁଁ ସୁନାମୋହର ପୁରସ୍କାର ଦେଉଛି । ଯା' ଦୁଲ୍ଲାକୁ ଦେଖାଶୁଣା କର । ତାର ଉତ୍ତମ ଭାବରେ ପଢ଼ାପଢ଼ି ର ବ୍ୟବସ୍ଥା କର । ସେ ବଡ଼ ହେଲେ ମୁଁ ତା'କୁ ଦରବାରକୁ ଡକାଇ ଆଣି ଜାଗିର୍‌ଦାର କରିଦେବି ।"

ଲଧିଧୀ ଗାଁକୁ ଫେରିଆସି ଦୁଲ୍ଲାକୁ କାଜି ପାଖକୁ ନେଇଗଲା । କାଜିକୁ ଶିରିଣୀ ଭେଟି ଦେଇ, ଦୁଲ୍ଲାକୁ ଇସ୍‌ଲାମ ଧର୍ମଶିକ୍ଷା ଦେଇ ସୁପଥରେ ଚାଲିବାକୁ ଶିକ୍ଷା ଦେବାପାଇଁ ଅନୁରୋଧ କଲା ।

କାଜିର ରକ୍ଷଣଶୀଳ ପାଠପଢ଼ାରେ ବିରକ୍ତ ହୋଇ ଦିନେ ଦୁଲ୍ଲା ତା'କୁ ପିଟିପକାଇଲା । ତା'ପରେ ସେ ବଢ଼େଇ ପାଖକୁ ଯାଇ ବାଟିଲିଖଡ଼ା ତିଆରି କରିବା ପାଇଁ କହିଲା । ଦୁଲ୍ଲାର ଶରୀରରେ ଚଂଚଳତା ଥିଲା ଓ ତା'ର କାହାରି ପ୍ରତି ଭ୍ରୂକ୍ଷେପ ନଥିଲା । ଗାଁ ପିଲାଙ୍କୁ ଠୁଳ କରି ସେ ନିଜେ ତାଙ୍କର ସର୍ଦ୍ଦାର ହେଲା । ସ୍ତ୍ରୀଲୋକମାନେ କୂଅରୁ ପାଣି ଆଣିଲାବେଳେ ସେମାନେ ତାଙ୍କର ମାଠିଆ କଣା କରିଦେଉଥିଲେ । ଗାଁର ସ୍ତ୍ରୀଲୋକମାନଙ୍କ ପାଇଁ ଦୁଲ୍ଲା ଓ ତା'ର ସାଥୀମାନଙ୍କ କୌତୁକ ଖେଳ ଅସହ୍ୟ ହୋଇପଡ଼ିଲା ।

ଦିନେ ନଂଦୀ ନାମକ ଜଣେ ସ୍ତ୍ରୀ ଟିପ୍‌ପଣୀ କଲା, "ଆରେ ସ୍ତ୍ରୀଲୋକମାନଙ୍କର ମାଠିଆ କାହିଁକି କଣାକରି ବୁଲୁଛୁ ? ଯଦି ତୁ ଏତେ ବୀର, ତା'ହେଲେ ନିଜ ବାପଅଜାଙ୍କ ହତ୍ୟାର ପ୍ରତିଶୋଧ ନେଉନୁ କାହିଁକି ? ଯା'···ବାଦଶାହ ଆକବର ଆଗକୁ ଯା' । ଯିଏ ତୋର ବାପର ମୁଂଡକାଟି କରି ବଡ଼ଦ୍ୱାର ଉପରେ ଝୁଲାଇ ଦେଇଥିଲା, ତା'କୁ ଲଢ଼ିବା ପାଇଁ ଡାକରା ଦେ ।"

ଏହା ଶୁଣି ଦୁଲ୍ଲାର କଳିଜାରେ ନିଆଁ ଲାଗିଗଲା । ସ୍ତ୍ରୀଲୋକମାନଙ୍କ କଥା ଭୁଲିଯାଇ ସେ କଟାରିଟିକୁ ମୁଠାଇ ଧରିଲା । ତା'ର ଶିରାପ୍ରଶିରାରେ ବହୁଥିବା ରାଠବଂଶର ରକ୍ତ ଟକ୍‌ମକ୍ ହୋଇ ଫୁଟିଉଠିଲା । ସେଇଠୁ ସେ ସିଧା ନିଜ ମାଆ ଆଗରେ ଯାଇ କଟାରିଟିକୁ ଦେଖାଇ କହିଲା, "ସତ କହ, ମୋ ବାପା କେମିତି ମରିଥିଲା ? କେହି ଜଣେ ମତେ ଟାପରା କରିଛି ।"

ମା' ଭୟଭୀତ ହୋଇପଡ଼ିଲା । ସେ ପୁଅର ଦପ୍‌ଦପ୍ ହୋଇ ଜଳୁଥିବା ଆଖିରେ ପ୍ରତିଶୋଧର ବହ୍ନି ଦେଖିପାରିଲା । ଦୁଲ୍ଲା ପୁଣି ଥରେ କହିଲା, "ତୁ ଯଦି ସତ କଥା ନ କହୁ, ତା'ହେଲେ ମୁଁ ତୋ'ର ମୁଂଡ ହାଣିପକାଇବି । କହ, ମୋ ବାପା କେମିତି ମରିଥିଲା ?"

ବିଧବା ମାଆ କାନ୍ଦି କାନ୍ଦି ସବୁ କଥା କହିଲା । ପୁଅକୁ ଛାତିରେ ଭିଡ଼ି ଧରି ତା' କପାଳରେ ଚୋକ ଦେଲା ଓ କହିଲା, "ମୁଁ ଅନେକ କଷ୍ଟ ସହ୍ୟ କରି ତୋତେ ପାଳିଛି । ବାଦଶାହ ସହିତ କେବେହେଲେ ଲାଗିବୁନି ।"

ଦୁଲ୍ଲାର ନାକପୁଡ଼ା ଥରିଉଠିଲା ଓ ସେ କ୍ରୋଧରେ ଜର୍ଜରିତ ହୋଇ କହିଲା, "ମୁଁ

କାପୁରୁଷ ନୁହେଁ । ମୁଁ ନିଶ୍ଚୟ ମୋ ବାପାର ହତ୍ୟାର ପ୍ରତିଶୋଧ ନେବି । ମୋତେ ମୋ ବାପର କୌଣସି ଏକ ସ୍ମୃତିଚିହ୍ନ ଦେ ।''

ମା' ଘର ପଛପଟେ ଥିବା କୋଠରିର କୋଲପ ଖୋଲିଲା । ଏଇ କୋଠରିଟିକୁ ସେ ସବୁବେଳେ ଦୁଲ୍ଲାର ଆଖି ଉହାଡ଼ରେ ରଖିଥିଲା । ଦୁଲ୍ଲା କୋଠରି ଭିତରକୁ ପଶିଯାଇ କଣରେ ଥୁଆ ହୋଇଥିବା ବର୍ଚ୍ଛାଟିକୁ ଉଠାଇଲା । ଏହା ତାହାର ପିତାଙ୍କର ବର୍ଚ୍ଛା ଥିଲା । ବର୍ଚ୍ଛାଟି ଯେମିତି ନିଆଁ ଭଳି ଜଳୁଥିଲା । ମାଆ ବୁଝିପାରିଲା ଯେ ଦୁଲ୍ଲା ନିଶ୍ଚୟ ପ୍ରତିଶୋଧ ନେବ । ସେ ଭୟଭୀତ ହୋଇପଡ଼ିଥିଲେ ମଧ୍ୟ ତା'ର ମଥା ଗର୍ବୋନ୍ନତ ହୋଇଉଠିଲା । କୋଠରିଟି ଖଣ୍ଡା, ଢାଲ, ଛୁରି, ବର୍ଚ୍ଛା ଇତ୍ୟାଦି ଅସ୍ତ୍ରରେ ଭର୍ତ୍ତିହୋଇଥିଲା । ଗୋଟାଏ କଣରେ ଏକ ବିରାଟ ନାଗରା ବାଜା ପଡ଼ିଥାଏ । ମା' କଞ୍ଚା ଗାଈଦୁଧ ଅଣାଇ ବାଜା ଉପରେ ଛିଞ୍ଚି ଦେଲା । ଦୁଲ୍ଲା ବାଜାଦେହରେ ଆଘାତ କଲାରୁ କୋଠରିଟି ଗୁଞ୍ଜରିତ ହୋଇ ଉଠିଲା । ଏଇ ଦୁନ୍ଦୁଭି ଶବ୍ଦ ଗଳି ଓ ଗାଆଁ ଦାଣ୍ଡରେ ପ୍ରତିଧ୍ୱନିତ ହୋଇ ବାରକୋଶ ଦୂରକୁ ଶୁଣାଗଲା ।

ନାଗରାର ଶବ୍ଦ ଦୁଲ୍ଲାର ବିଦ୍ରୋହୀ ପୁରୁଷତ୍ୱର ଧ୍ୱନି ଥିଲା । ଏଇ ରକ୍ତପିପାସୁ ଆହ୍ୱାନ ଯାଇ ଆକବରଙ୍କ ରାଜପ୍ରାସାଦର କାନ୍ଥରେ ପ୍ରତିଧ୍ୱନିତ ହେଲା । ବାଦଶାହ ପାଖରେ ଖବର ଆସି ପହଞ୍ଚିଲା ଯେ ସାନ୍ଦଲବାର୍‌ରେ ଷୋହଳ ବର୍ଷ ପରେ ନାଗରା ବାଜୁଛି । ମୋଗଲ ସାମ୍ରାଜ୍ୟ ଭିତରେ ଏଭଳି ବେପରୁଆ ସ୍ୱର ଉତ୍ତୋଳନ କରିବାପାଇଁ କାହାର ବା ସାହସ ଥିଲା ।

ଦୁଲ୍ଲା ପାଞ୍ଚଶହ ଖଣ୍ଡା ଓ ବର୍ଚ୍ଛା ନିଜ ସାଥୀମାନଙ୍କ ଭିତରେ ବାଣ୍ଟିଦେଲା ଓ ସେ ତା'ର ପ୍ରଥମ ଆକ୍ରମଣ ନିଜର ମାମୁଘରର ଲୋକମାନଙ୍କ ଉପରେ କଲା । ତା'ର ରାଗର କାରଣ ହେଲା ତା'ର ବାପାର ମୁଣ୍ଡକାଟ ସମୟରେ ସେମାନେ ତା' ମାଆକୁ ସାହାଯ୍ୟ କରିବା ପାଇଁ ମୋଟେହେଲେ ଆସି ନଥିଲେ । ସେ ଲୁଣ୍ଠନ କରିଥିବା କୌଣସି ବସ୍ତୁ ନିଜ ପାଖରେ ରଖିବ ନାହିଁ ବୋଲି ଶପଥ କରିଥିଲା । ସେ ମାମୁଘରର ଗୃହପାଳିତ ପଶୁଗୁଡ଼ିକ ଛଡ଼ାଇ ଆଣି ନିଜ ଗାଆଁର ବାରିକ, ବ୍ରାହ୍ମଣ ଓ ଗରିବ ଲୋକଙ୍କ ଭିତରେ ବାଣ୍ଟିଦେଲା ।

ଏହାପରେ ଦୁଲ୍ଲା ସିଂହ ପାଲଟିଗଲା । ସେଇ ଅଂଚଳ ଦେଇ ଆତଯାତ ହେଉଥିବା ଲୋକଙ୍କ ସହିତ ଯୁଦ୍ଧ କରି ଦୁଲ୍ଲା ସେମାନଙ୍କ ସାଥିରେ ଥିବା ଦ୍ରବ୍ୟମାନ ଓ ଅସ୍ତ୍ରଶସ୍ତ୍ର ଲୁଟି ନେଉଥିଲା । ତା'ର ସାହସ ଓ ବିଶାଳ ହୃଦୟର କାହାଣୀ ଦୂରଦୂରାନ୍ତରରେ ଚର୍ଚ୍ଚା ହେବାକୁ ଲାଗିଲା । ସାରା ଅଂଚଳର ଝିଅମାନେ ତା'ପ୍ରତି ଆସକ୍ତ ହୋଇପଡ଼ିଲେ ।

ଦୁଲ୍ଲାର ଅନ୍ତରରେ ଏକପ୍ରକାରର ଅଶାନ୍ତି ଓ କ୍ରୋଧର ବହ୍ନି ଜଳୁଥିଲା । ତା'ର ଲୁଟପାଟ, ହାଣକାଟର ଉଦ୍ଦେଶ୍ୟ ଚୋରି କରିବା ନଥିଲା; ବରଂ ତାହା ନିଜର ବଳ ପ୍ରଦର୍ଶନ କରିବା ପାଇଁ ଏକ ବାହାନା ଥିଲା । ବିଦ୍ରୋହର ସ୍ୱର ଉତ୍ତୋଳନ କରିବାର

ପ୍ରକୃତ ଉଦ୍ଦେଶ୍ୟ ଥିଲା ତା'କୁ ପ୍ରତିରୋଧ କରିବା ପାଇଁ ମୋଗଲ ଶକ୍ତି ତା' ସହିତ ସଂଘର୍ଷ କରିବା ପାଇଁ ବାଧ୍ୟ ହେଉ ।

ଦୁଲ୍ଲାକୁ ଭେଟି ନ ଦେଇ କେହି ହେଲେ ସେଇ ରାସ୍ତାରେ ଯାଇ ପାରୁ ନଥିଲେ । ସେ ଅଲ୍ଲୀ ସୌଦାଗରର ପାଞ୍ଚଶହ ଘୋଡ଼ା ଲୁଣ୍ଠନ କଲା । ମୈଦା ସାହୁକାରର ଧନସଂପଦ ବୋଝାଇ ହୋଇଥିବା ଖଚରମାନ ଛଡ଼ାଇନେଲା । ଆକବରଂକ ଦରବାରରେ ନିତି ଦୁଲ୍ଲା ବିରୁଦ୍ଧରେ ନୂଆ ନୂଆ ଅଭିଯୋଗମାନ ଆସିବାକୁ ଲାଗିଲା । ଶେଷରେ ବିରକ୍ତ ହୋଇ ଆକବର ଜଣେ ଅଭିଜ୍ଞ ଗୁପ୍ତଚରକୁ ସଠିକ ଖବର ନେବାପାଇଁ ପଠାଇଲେ ।

ଗୁପ୍ତଚର ଜ୍ୟୋତିଷ ସାଜ ଦୁଲ୍ଲାର ଗାଁରେ ପହଂଚଲା । ଦୁଲ୍ଲା ଜ୍ୟୋତିଷର ବହୁତ ସତ୍କାର କଲା । କିଂତୁ ସେ ଯେମିତି ତା'କୁ ଗୁପ୍ତଚର ବୋଲି ଜାଣିପାରିଲା, ତା'ର ନିଶଦାଢ଼ି କାଟି ତାହାକୁ ଗାଁରୁ ବିଦାକଲା । ଗୁପ୍ତଚର ବାଦଶାହଂକ ପାଖରେ ସବୁକଥା ଜଣାଇଲା । ସମ୍ରାଟ୍ କ୍ରୋଧାନ୍ୱିତ ହୋଇଗଲେ—ଦୁଲ୍ଲାର ଏତେ ସାହସ ? ସେ ଦୁଲ୍ଲାକୁ, ଜୀବଂତ ବା ମୃତ, ତାଂକ ପାଖକୁ ଗିରଫ କରି ଆଣିଲେ ମୋତି ମାଣିକ୍ୟ ପୁରସ୍କାର ଦେବେ ବୋଲି ଘୋଷଣା କଲେ ।

ମିରଜା ନଜାମୁଦ୍ଦିନ ସୈନ୍ୟବାହିନୀ ଧରି ଦୁଲ୍ଲାର ଗାଁକୁ ବାହାରିଲା । ସୈନ୍ୟମାନେ ଆସି ସାଂଦଲବାର ସୀମାରେ ଛାଉଣୀ ପକାଇଲେ । ଗାଁରେ ଥିବା ସୁଂଦରୀ ମଧ୍ୟ ଅନ୍ୟ ଯୁବତୀ ଝିଅମାନଂକ ପରି ଦୁଲ୍ଲାକୁ ପ୍ରାଣଭରି ଭଲପାଉଥିଲା । ସେ ଅତ୍ୟଂତ ଚତୁରୀ, ବୁଦ୍ଧିମତୀ ଓ ସୁଂଦରୀ ଥିଲା । ସେ ଦୁଧ ବିକିବା ବାହାନାରେ ଛାଉଣୀ ପର୍ଯ୍ୟଂତ ଯାଇଲାଗଲା ଓ ଖବର ଆଣିଲା ଯେ ମିର୍ଜା ନଜାମୁଦ୍ଦିନ ଦୁଲ୍ଲାକୁ ଶେଷ କରିଦେବା ପାଇଁ ଆସିଛି ।

ଏଇ ଖବର ଦୁଲ୍ଲାକୁ ମିଳିବାକ୍ଷଣି ସେ ତା'ର ସାଥୀମାନଂକୁ ଏକତ୍ରିତ କରି ଯୁଦ୍ଧ ଆରଂଭ କରିଦେଲା । ତା'ର ମାଆ ମୋଗଲ ସୈନ୍ୟ ସହିତ ସଂଘର୍ଷ ନକରିବା ପାଇଁ ଅନେକ ବୁଝାଇଲା । କିଂତୁ ସ୍ୱାଭିମାନୀ ଦୁଲ୍ଲା ଆକବରଂକୁ ଥରେ ଦେଖାଇଦେବା ପାଇଁ ଚାହୁଁଥିଲା ଯେ ସାଂଦଲବାରର ଭଟ୍ଟୀ ରାଜପୁତ୍ମାନେ କାହାରି ଆଗରେ ମୁଂଡ ନୁଆଁଇବା ପାଇଁ ପ୍ରସ୍ତୁତ ନୁହଂତି ।

ଅନେକ ଦିନଧରି ଯୁଦ୍ଧ ଚାଲିଲା ଓ ଶେଷରେ ନଜାମୁଦ୍ଦିନର ସୈନ୍ୟମାନେ ଆଉ ଦୁଲ୍ଲା ଆଗରେ ଛିଡ଼ା ହୋଇ ପାରିଲେ ନାହିଁ ।

ଆକବର ଏକଥା ଶୁଣିବା ପରେ ଶେଖୁକୁ ଏକ ବିଶାଳ ସେନାବାହିନୀର ନେତୃତ୍ୱ ଦେଇ ଦୁଲ୍ଲାର ଶିରଚ୍ଛେଦନ କରି ଆଣିବା ପାଇଁ ଆଦେଶ ଦେଲେ ।

ଶେଖୁର ସେନାବାହିନୀ ମାଡ଼ିଆସିଲେ ଓ ସାଂଦଲବାର୍‌ରେ ମୋଗଲ୍‌ମାନଂକର ରଣଦୁଂଦୁଭି ବାଜିଉଠିଲା । ଲଧୀର ହୃଦୟ ଥରିଉଠିଲା । ସେ ଶେଖୁକୁ ପାଳିଥିଲା । ଗୋଟାଏ ପଟେ ନିଜ ଗର୍ଭରୁ ଜନ୍ମ ହୋଇଥିବା ଦୁଲ୍ଲା ଓ ଅନ୍ୟ ପଟେ ନିଜ

ଅନରୁ ଦୁଧ ଖୁଆଇ ପାଳିଥିବା ଶେଖୁ । ଦୁଇଜଣଂକ ରକ୍ତରେ ପ୍ରବାହିତ ଲଧିଧୀର ସ୍ୱାଭିମାନୀ ଦୁଧ କାହାରିକୁ ଅନ୍ୟଜଣକ ଆଗରେ ନଇଁଯିବାକୁ ଦେଉନଥିଲା ।

ଲଧିଧୀ କଲାଲୁଗା ପିଂଧି ନିଜର ପଣତକାନି ପକାଇ ଭିକ ମାଗିଲା । ତାକୁ ଦେଖି ଶେଖୁର ହୃଦୟ ତରଳିଗଲା । ସେ ମାଆ ଆଗରେ ଶପଥ କଲା ଯେ ଯଦି ଦୁଲ୍ଲା ବିଦ୍ରୋହ ତ୍ୟାଗ କରିଦିଏ, ତା'ହେଲେ ସେ ବାଦଶାହଂକୁ କହି ତା'ର ଜୀବନ ରକ୍ଷା କରିବ ।

ମା' ଦୁଲ୍ଲାକୁ ସଂଧିକରିବା ପାଇଁ ଅନୁନୟ କଲା । କିଂତୁ ଏବେ ଦୁଲ୍ଲା ଓ ଶେଖୁ ମଝିରେ ରକ୍ତର ଝରଣା ପ୍ରବାହିତ ହେଉଥିଲା—ନିଜର ବାପ-ଅଜାଂକ ରକ୍ତର ସ୍ରୋତ । ସେ ମାଆର କଥା ମାନିଲା ନାହିଁ ଓ ଶେଖୁକୁ ଆହ୍ୱାନ କଲା, "ତୁ ଯଦି ଆକବରର ପୁଅ ହୋଇଥାଉ ଓ ମୁଁ ଯଦି ପ୍ରକୃତରେ ଫରିଦର ପୁଅ, ତା'ହେଲେ ଯୁଦ୍ଧପଡ଼ିଆକୁ ବାହାରିଆ । ଏକା ଆସି ମୋ ସହିତ ଯୁଦ୍ଧ କର ।"

ଯୁଦ୍ଧ ଆରଂଭ ହେଲା । ଦୁଲ୍ଲା ବିଜୁଳିଗତିରେ ତରବାରି ଚାଳନା କରୁଥାଏ । ଶେଖୁ ଦେହରେ ମଧ୍ୟ ମୋଗଲ ରକ୍ତର ଉତ୍ତେଜନା ଥିଲା । ସାରା ଜୀବନର ଆକ୍ରୋଶ ପଦାକୁ ବାହାରି ଆସିଲା । ଆଗରୁ ସେ ଶହ ଶହ ଥର ଖେଳରେ ଦୁଲ୍ଲା ସହିତ ଲଢ଼େଇ କରିଥିଲା । ଦୁଲ୍ଲା ସବୁଥର ତା'ଠାରୁ ଆଗରେ ରହୁଥିଲା । ଏବେ ଶେଖୁ ତାହାର ପୁନରାବୃତ୍ତି ହେବାକୁ ନଦେବା ପାଇଁ ଦୃଢ଼ସଂକଳ୍ପ ହୋଇ ପ୍ରାଣପଣେ ଆଘାତ କରୁଥିଲା । ତରବାରି ଚକ୍‌ମକ୍ ହୋଇଉଠୁଥିଲା ଓ ଦୁହେଁ ରକ୍ତାକ୍ତ ହୋଇପଡ଼ୁଥିଲେ । କିଂତୁ ଶେଖୁକୁ ପରାଜିତ ହୋଇଯାଉଥିବାର ଦେଖି ମିରଜା ନିଜାମୁଦ୍ଦିନ ଓ ତା'ର ସୈନ୍ୟଗଣ ଦୁଲ୍ଲା ଉପରକୁ ମାଡ଼ିଆସିଲେ । ଶେଖୁ ଶେଷଥର ପାଇଁ ତରବାରିରେ ଆଘାତ କଲା । ତା'ର ତରବାରି ଦୁଲ୍ଲାର ଛାତିକୁ ଭେଦିକଲା ଓ ରକ୍ତର ଧାରା ବହିଗଲା ।

ସାଂଦଲବାରର ବୀରପତ୍ନୀ ଓ ସ୍ୱାଭିମାନୀ ଦୁଲ୍ଲା ଚିରଦିନ ପାଇଁ ମୃତ୍ୟୁର କୋଳରେ ଆଖିବୁଜିଦେଲା ।

ଦୁଲ୍ଲା ଯୁଦ୍ଧରେ ପରାଜିତ ହୋଇଥିଲା, ଏଥିରେ ସଂଦେହ ନାହିଁ; କିଂତୁ ଲୋକଂକ ହୃଦୟରେ ସେ ଚିରକାଳ ପାଇଁ ଅମର ହୋଇ ରହିଲା । ସମସ୍ତେ ତା'ର ସ୍ୱାଭିମାନର ଗୀତ ଗାନ କରିବାକୁ ଲାଗିଲେ । ତା'ର ଅପୂର୍ବ ବୀରତ୍ୱର କାହାଣୀ କିଂବଦଂତୀ ପାଲଟିଯାଇ ଲୋକମୁଖରେ ପ୍ରଚଳିତ ହୋଇଆସୁଛି । ତା' ନା'ମ ଅନୁସାରେ ତାହାର ଗାଆଁର ନାମ ମଧ୍ୟ ସେଇଦିନଠାରୁ ଦୁଲ୍ଲେବାଲ ରଖାହେଲା ।

———

# ଜୀଉଣା ମୌଡ଼

"ଘର-ଘର ପୁତ୍ରଙ୍କ ଜମ୍ନେଦେ ଜୀଉଁଣା ମୌଡ଼ ନା କସେ ବନ ଜାଣା"—ଅର୍ଥାତ୍ ଘରେ ଘରେ ପୁଅ ଜନ୍ମ ହୁଅଂଡ଼; କିଂତୁ କେହି ହେଲେ ଜୀଉଣା ମୌଢ଼ ହୋଇ ପାରିବେ ନାହିଁ ।

ଏହା ବେଶି ଦିନ ତଳର କଥା ନୁହେଁ କିଂବା ମନଗଢ଼ା କାଳ୍ପନିକ କାହାଣୀ ନୁହେଁ । ବିଂଶ ଶତାବ୍ଦୀର ପ୍ରାରଂଭରେ ଦିନକର କଥା । ଗ୍ରୀଷ୍ମଋତୁ ଥିଲ । ଦ୍ୱିପହର ତା'ର ଶୀର୍ଷ-ସ୍ଥାନରେ ଥିଲ ।

ସଂଗରୂର ଜିଲ୍ଲାର ମୌଡ଼ ଗ୍ରାମରେ ଜଣେ ଅଜଣା ଲୋକ ଜମିଦାର ଖଡ୍‌ଗ ସିଂହର ଘରର ଠିକଣା ପଚ୍ଛରି ପଚ୍ଛରି ପହଂଚିଗଲ ।

ସେ ଠିକ୍ ଖଡ୍‌ଗ ସିଂହ ଘରେ ପହଂଚଯାଇଥିଲେ ସୁଦ୍ଧା ସେତେବେଳକୁ ଖଡ୍‌ଗ ସିଂହ ଘରେ ନଥିଲ । ଘରେ ତା'ର ପୁଅ ଜୀଉଣା ସିଂହ ଥିଲ ।

ଆଗଂତୁକ 'ସତ ସିରୀ ଅକାଲ' କହି ଖଟ ଉପରେ ବସିଲ ।

"ମୁଁ କଲାପାଣିରୁ ଆସିଛି···" ଆଗଂତୁକ କହିଲ । ଜୀଉଣା ଦୁଧ ନେଇ ଆସିଲ ଖୁବ୍ ମିଠା ପକାଇ ।

"କଣନ ଖବର ପଠାଇଛି ଯେ ତୁ ଯଦି ମୋ ମାଆର ପୁଅ ହୋଇଥିବୁ ତା'ହେଲେ ତୋଗରକୁ ଜୀଅଂତା ଛାଡ଼ିବୁନ । ଯିଏ ମୋ ସାଥିରେ କପଟତା କରି ପୁଲିସ ହାତରେ ଧରା-ପକାଇ କଲାପାଣି ପଠାଇଦେଲ ତା'ଠାରୁ ନିଶ୍ଚୟ ମୋର ପ୍ରତିଶୋଧ ନେବୁ ।"

ଜୀଉଣା ଖବରଟି ଶୁଣିଲ ଓ କାଠିଟିଏ ଧରି ମାଟି ଖୋଳିବାକୁ ଲଗିଲ ।

"ତୋର ଭାଇ ତ ସବୁ କିଛି ହରାଇଦେଲ; ଆଉ ସେ ଶଳା ଆରାମ କରୁଥିବ । ଆଉ ମଧ୍ୟ ଜୀବନସାରା ତୁ କାହିଁକି କଥା ଶୁଣୁଥିବୁ ଯେ ତୁ ଭାଇ ପାଇଁ ପ୍ରତିଶୋଧ ନେଲୁନ । ଯେଉଁ ମଣିଷର ଲଜ ନାହିଁ, ସେ ପଶୁ ସହିତ ସମାନ । ସଂସାରରୁ କିଏ କ'ଣ କିଛି ନେଇ-ଯାଏ ? ମନେରଖ, ଘରର ସ୍ତ୍ରୀଲୋକମାନଂକର କାନରେ ଯେମିତି ଏ କଥା ନପଡ଼େ । ସ୍ତ୍ରୀମାନେ କାଂଦବୋବାଳି ପକାଇ ପୁରୁଷମାନଂକୁ ଦୁର୍ବଳ କରିଦିଅଂତି । କଣନ ଅତି

ମନଦୁଃଖ କରି ବସିଥିଲା । ମୁଁ ତାକୁ କହିଲି, ତୋ'ର ଖବର ପଚ୍ଚାରୁଥିଲେ ସାଇଲେ ଯାଇ ମୁଁ ଘରକୁ ଯିବି । ଆଉ ସିଏ ପୁଣି ମୋର ନିଜ କାକା । ମୋ ବାପାକୁ ସେ ବୈଠକ-ଘରେ ଗାଳିଦେଇଥିଲା । ଚାରି ପ୍ରହର ବିତିବା ଆଗରୁ ସେଇ ବୈଠକଘରେ ଆଣି ତା'ର ମୁଣ୍ଡକୁ ଝୁଲାଇ ଦେଇଥିଲି । କୋଡ଼ିଏ ବର୍ଷ କଳାପାଣି କାଟି ଆସିଲି । ମୋର ବା କ'ଣଟା ଖସିଗଲା ? ଏବେ ଆଉ କେଉଁ ଶଳା ତ କହିପାରିବନି ଯେ ବାପାକୁ ଗାଳି ଶୁଣିବାପାଇଁ ଛାଡ଼ିଦେଇ ତୁ ଲାଂଗୁଡ଼ ଜାକି ଘର ଭିତରେ ପଶିଗଲୁ......'' ଆଗଂତୁକ କହିଚାଲିଥାଏ ।

ସେଇଦିନ ରାତିରେ ଖାଉଣା ଘରୁ ବାହାରିଗଲା ଓ ଡକାୟତମାନଂକ ଦଳରେ ମିଶିଗଲା ।

ତା ମାଆର ଆଖିରୁ ଅବିରତ ଲୁହର ଧାର ବହିଯାଉଥାଏ । ବାପ ମୁଂଡରେ ହାତ ଦେଇ ବସିପଡ଼ିଲା । ଏଯାଏ ସେ କଣନର ଦୁଃଖ ଭୁଲି ନଥିଲା । ବାଘଭଳି ଯୁଆନ ପୁଅକୁ ସେ କଳାପାଣି ଯିବା ପାଇଁ ଗାଡ଼ିରେ ବସାଇଦେଇଥିଲା । କିଏ ଜାଣେ ଜୀଇଁଥିଲା ଭିତରେ ପୁଣି ଥରେ ତା' ମୁହଁ ଚାହିଁପାରିବ ନା ନାହିଁ । ସେ ତ ଭାବିଥିଲା— ଯାହା ହେଲା, ହେଲା, ଏବେ ଶାଂତିରେ ରହିବ ।

କଣନ ଯୋଗୁଁ ତାକୁ ପୋଲିସ୍ ପ୍ରତିଦିନ ହଇରାଣ କରୁଥିଲା । କେତେଥର ଯେ ପୁଲିସ୍ ତାକୁ ଓ ଖାଉଣାକୁ ଧରିନେଇ ଥାନାରେ ପିଟିଛଂତି, କଣନର ଠିକଣା ପଚାରିଛଂତି, ତା'ର ଠିକଣା ନାହିଁ । ହେଲେ ସେ ଅବା କଣ କହିଥାଆଂତା । ତା'କୁ ମଧ୍ୟ କ'ଣ କଣନର ଠାବ-ଠିକଣା କିଛି ଜଣାଥିଲା ?

ତା'ର ତ ସେଇଦିନଠାରୁ କଣନ ସାଂଗରେ ପଡ଼ୁନଥିଲା, ଯେଉଁଦିନଠାରୁ କଣନ ପାଖକୁ ଆଜେବାଜେ ଲୋକମାନେ ଆସିବାକୁ ଲାଗିଥିଲେ । ସେ କୂଅ ପାଖରେ ଥିବା କୋଠରିରେ ଲୁଚାଇ ମଦ ତିଆରି କରୁଥିଲା । କଣନ ପରିବାରର ପୁଅଝିଅଂକର ଲକ୍ଷଣ ତ୍ୟାଗକରି ନାଚବାଲାଂକ ପରି ପୀରି ସାଜି ବେକାର ଘୂରିବୁଲୁ, ଏକଥା ତା'ର ବାପ ପସଂଦ କରୁନଥିଲା । ବୋଧହୁଏ ବାପାକୁ ଅସଂତୁଷ୍ଟ ହେବାର ଦେଖିପାରି ସେ ଘରଦ୍ୱାର ଛାଡ଼ିଦେଇ ଡୋଗର ଓ ଖଡ଼ୟାଲର ଜୈମଲ ସାଥୀରେ ମିଶି ମାରପିଟ କରିବା ଆରଂଭ କରି ଦେଇଥିଲା ।

ଯେଉଁଦିନ କଣନ ଓ ତା'ର ସାଥୀମାନେ ଗାଁର ମହାଜନର ବରଯାତ୍ରୀମାନଂକୁ ଲୁଟପାଟ କଲେ, ସେଦିନ କଣନର ବାପା ବହୁତ ଦୁଃଖିତ ହୋଇଥିଲା ଏବଂ ଅପମାନିତ ବୋଧକରିଥିଲା । ଗାଁବାଲାଏ ତାକୁ ବୈଠକକୁ ଡାକି ଶୁଣାଇଦେଇଥିଲେ ଯେ ତୋ ପୁଅ ଯେଉଁ କାମମାନ କରୁଛି, ତାହା ଭଲ ନୁହେ । ସେ ନିଜେ ଗାଁବାଲାଂକ କଥାରେ ରାଜି ହେଲା ଯେ ବାସୁଦେବ ସର୍ଦ୍ଦାର ଯାଇ ଥାନାରେ ଏତଲା ଦେଇଆସୁ । ଏଇ ଘଟଣା ଯୋଗୁଁ ଥାନାବାଲା ମୌଡ଼ ଗ୍ରାମରେ ଏକ ଫାଂଡି ବସାଇ ଦେଇଥିଲେ ।

କଣନ ଏକଥା ଶୁଣିବା ପରେ ନିଜର ସାଥୀମାନଂକୁ ନେଇ ଗାଆଁକୁ ଆସିଲା । ସେ

ବୈଠକ ଚଉପାଢ଼ିରେ ଠିଆହୋଇ ବାସୁଦେବଙ୍କୁ ଭର୍ତ୍ସନା କଲା ଓ ବନ୍ଧୁକରୁ ଗୁଳି ଫୁଟାଇଲା । ଫାଂଡରେ ଥିବା ସିପେହମାନେ ଭୟରେ ଗାଁ ଛାଡ଼ି ଚାଲିଗଲେ ଆଉ କଶନ ଓ ତାର ସହଚରମାନେ ବାସୁଦେବଙ୍କୁ ହତ୍ୟାକଲେ ।

ସରକାର କଠୋର ପଦକ୍ଷେପ ନେବାକୁ ଲଗିଲ । ପୋଲିସ୍ ତାର ବାପା ଓ ଭାଇ ଜୀଉଣାକୁ ଧରନେଇ ବହୁତ ମାଡ଼ଦେଲେ । କିଂଶନର ମୁଂଡ ପାଇଁ ପୁରସ୍କାର ଘୋଷଣା କରାଗଲା । ତାଂକ ଘରେ କୋଲପ ପକାଇ ଦିଆହେଲା ।

କଶନ ଜୈମଲକୁ କହିଲା, "ତୁ ମୋର ଭାଇ, ମୋତେ ସାହାଯ୍ୟ କର । ପୋଲିସ୍‌କୁ ଦିଆନଆ କର ପିଚ୍ଛା ଛଡ଼ାଇ ଦେ ।" କିଂତୁ ଜୈମଲ ଉତ୍ତର ଦେଲା, "ମୋ ପାଖରେ କିଛି ନାହିଁ ।" କଶନ କହିଲା, "ଆମେ ଏତେ ଡକାୟତି କରୁଛୁ, କେତେ ବରଯାତ୍ରୀଂକୁ ଲୁଟ୍ କରିଛୁ, ଖାସ୍ଥୋରେ କେତେ ଗହଣାଗାଂଠି ଛଡ଼ାଇ ଆଣିଛୁ, ସୁନାମର ଜୈନ ଘରୁ କେତେ ଜିନିଷ ଲୁଂଠନ କରାହେଲା, ଘଡ଼ାମର ସାହୁକାର ଘରୁ କେତେ ନଗଦ ଟଂକା ମିଳିଥିଲା; ଏ ସବୁଥିରୁ ତ ମୁଁ ଏଯାଏ ମୋର ଭାଗ ବି ନେଇନ ।"

ଜୈମଲ କହିଲା, "ମୋ ପାଖରେ ଯାହା କିଛି ଥିଲା ସବୁ ସରିଗଲାଣି ।" କଶନ ନିରବରେ ଚାଲିଗଲା । କିଂତୁ ସେ ଏଇ କଥାଟିକୁ ମନ ଭିତରେ ରଖିଥାଏ ।"

ଜୈମଲର ସ୍ତ୍ରୀ ମଧ୍ୟ ଜୈମଲକୁ ବୁଝାଇଲା ଯେ କାହାର ବିଶ୍ୱାସରେ ଜମାଦେଇଯାଇଥିବା ଜିନିଷ ଆତ୍ମସାତ୍ କରିବା ଖରାପ କଥା । ବିପଦ ସମୟରେ ଲୋକେ ବନ୍ଧୁ ପାଇଁ ନିଜର ଜୀବନ ମଧ୍ୟ ଦେବାକୁ କୁଂଠାବୋଧ କରଂନ୍ତି ନାହିଁ; ହେଲେ ତୁ ଲାଳସାରେ ପଡ଼ି ଯାଇଛୁ । ବନ୍ଧୁ ସହିତ ବିଶ୍ୱାସଘାତକତା କରିଥିବା ଲୋକପାଇଁ ଇହଲୋକ, ପରଲୋକ କୌଣସିଠାରେ ମଧ୍ୟ ସ୍ଥାନ ନାହିଁ । ମୁଁ ହାତ ଯୋଡ଼ୁଛି । କଶନର ମନଭିତରେ ଯଦି ଟିକିଏହେଲେ ଖଟକା ରହିଗଲା, ତା'ହେଲେ ତୋର ଆଉ ରକ୍ଷାନାହିଁ ।

କିଂତୁ ଜୈମଲ କିଛିହେଲେ ଶୁଣିଲା ନାହିଁ । ସେ କହିଲା, "ବାଜେ କଥା କହନି, ମୁଁ ଏମିତି ବାରବୁଲା ମଲଙ୍କ ବହୁତ ଦେଖିଛି ।"

କିଛି ଦିନ ପରେ କଶନ ଆସି ଜୈମଲକୁ କହିଲା, "ଏକ ବରଯାତ୍ରୀଦଳକୁ ଲୁଟ୍ କରିବାର ଅଛି, ମୋ ସାଂଗରେ ଆ ।" ଜୈମଲ ପ୍ରଲୋଭନର ଶିକାର ହୋଇପଡ଼ିଲା । ଗାଁ ବାହାରକୁ ଆସି କଶନ ତା'କୁ କହିଲା, "ତୁ ମୋ ସହିତ ବିଶ୍ୱାସଘାତକତା କରିଛୁ । ମୁଁ କିଂତୁ ତୋତେ କପଟରେ ରଖି ମାରିବି ନାହିଁ । ତୁ ସାମ୍ନାକୁ ଆସି ଲଢ଼୍ । ମୁଁ ତୋତେ ହତ୍ୟା କରିବି ।" ଜୈମଲ ଗୁଳିଚଳାଇଲା; କିଂତୁ କଶନ ଘୁଞ୍ଚିଯାଇ ନିଜକୁ ବଞ୍ଚାଇଲା । ତା'ପରେ କଶନ ଲକ୍ଷ୍ୟକରି ଥରେ ମାତ୍ର ଗୁଳିଚଳାଇଲା । ଗୁଳି ଜୈମଲର ଛାତି ଫୁଟାଇ ବାହାରିଗଲା ।

ଜୈମଲକୁ ହତ୍ୟା କରିବା ପରେ କଶନ ତା' ଘରେ ଯାଇ ଜୈମଲର ସ୍ତ୍ରୀକୁ କହିଦେଇ ଆସିଲା ଯେ ମୁଁ ଜୈମଲକୁ ମାରିଦେଇଛି ।

ଡୋଗର ଏକଥା ଶୁଣିବା ପରେ କହିବାକୁ ଲଗିଲା ଯେ ଏହା ବଡ଼ ଖରାପ କଥା । ଯାହାକୁ ଥରେ ବଂଧୁ ବୋଲି କହିଦେଇଛୁ, ତା' ଆଡ଼କୁ ଖରାପ ନଜର ମଧ୍ୟ ପାପ । କଣନକୁ ଆଉ ବିଶ୍ୱାସ ନାହିଁ ।

ଚତୁର ହାତରେ ଖବର ପଠାଇ ଡୋଗର କଣନକୁ ଡକାଇଲା ଓ କଣନକୁ ବଞ୍ଚାଇବା ପାଇଁ ଉପାୟ ଚିଂତା କରିବା ପାଇଁ କହିଲା । ସେ କଣନର ଖୁବ୍ ସତ୍କାର କଲା । ଖାସି ମାଂସ ରେପେଇ ହେଲା । କଣନକୁ ମଦ ପିଇବା ପାଇଁ ଦେଲା । କଣନ ପେଟେ ମଦ ପିଇ ଶୋଇଗଲା ପରେ ଡୋଗର ବାହାରୁ ତାଲା ପକାଇ ବଲିଡ଼ର ଥାନାକୁ ଗଲା । ଅସଂଖ୍ୟ ପୋଲିସ୍ ସିପାହି ଆସି ଘରକୁ ଚାରିଆଡ଼ୁ ଘେରିଗଲେ । ଏଭଳି ଭାବରେ କଣନ ଧରାପଡ଼ିଲା ।

ବିଲାତର ମହାରାଣୀଂକ ପାଖକୁ ତାରବାର୍ତ୍ତା ପଠାହେଲା ଯେ କଣନ ଧରାପଡ଼ିଛି । ତାକୁ ଆଜୀବନ କାରାଦଂଡ ଦେଇ କଲାପାଣି ପଠାଇଦେବା ପାଇଁ ଆଦେଶ ମିଳିଲା ।

ସେଇ କଣନ ଭାଇ ପାଖରୁ ଆଜି ଜାଉଣା ମୌଡ ପାଖକୁ ଖବର ଆସିଥିଲା । ଜାଉଣା ମନରେ ପ୍ରଥମରୁ ସଂଦେହ ଥିଲା । କିଂତୁ ଏବେ ସେ ନିଶ୍ଚିତ ଭାବରେ ଜାଣିପାରିଲା ଯେ ଡୋଗର ମିତ୍ରଦ୍ରୋହ କରି କଣନକୁ ଧରାପକାଇଦେଇଥିଲା ।

ସେଇଦିନ ରାତିରେ ବୁଢ଼ାବାପ ଶୋଇଥିବା ସମୟରେ ସେ ଗାଁକୁ ପ୍ରଣାମ କଲା ଓ କାଂଧରେ କୁରାଢ଼ିଟିଏ ଧରି ସେଠାରୁ ବାହାରିଗଲା ।

ଜାଉଣା ସକାଳେ ଜଂଗଲ ଭିତରେ ପାଦଦେଲା । ଆଗରେ ଜଣେ ଗୋରା ଲୋକ ଶିକାର କରୁଥିଲା । ବଂଧୁକଟିକୁ ଥୋଇଦେଇ ସେ ଯେମିତି ପାଣି ପିଇବାକୁ ଲଗିଲା, ଜାଉଣା ବଂଧୁକଟିକୁ ଝାଂପିନେଲା ଓ ଗୋରା ଲୋକଟିକୁ ଶିକାର କରିବାପାଇଁ ତା' ଆଡ଼କୁ ଲକ୍ଷ୍ୟ କଲା । ଗୋରାଲୋକ ହାତ ଯୋଡ଼ିଲା, କାକୁତି ମିନତି କଲା । ସେ ଭୟରେ ଥରହର ହେଉଥାଏ । ଜାଉଣାର ହୃଦୟ ତରଳିଗଲା । ସେ କହିଲା, "ଯା ମାଂକଡ଼, ଏଠୁ ପଳା ।" ଗୋରାଲୋକଟି ଘୋଡ଼ା ଉପରେ ଚଢ଼ି ପଳାଇଗଲା ।

ଆଗକୁ ଗଲାପରେ ଡକାୟତଦଳ ଜାଉଣାକୁ ହୃଦୟ ଖୋଲି ସ୍ୱାଗତ ଜଣାଇଲେ ଓ ବହୁତ ଆଦର-ଅଭ୍ୟର୍ଥନା କଲେ । ଏକେ ତ ସେ କଣନର ଭାଇ; ତା' ସାଂଗକୁ ପୁଣି ତା'ପାଖରେ ଏତେ ବଢ଼ିଆ ବଂଧୁକ ଥିଲା । ତୃତୀୟରେ ସେ ଥିଲା ହୃଷ୍ଟପୁଷ୍ଟ, ବଳିଷ୍ଠ ଯୁବକ ।

ଜାଉଣାର ଗୋଟାଏ ମାତ୍ର ସର୍ତ୍ତ ରଖିଲା । ମୋ ଗାଆଁ ଆଡ଼କୁ କେହି ଆଡ଼ଆଖିରେ ମଧ୍ୟ ଚାହିଁବ ନାହିଁ । ମୋ ଗାଆଁର ଝିଅ-ବୋହୂ ସମସ୍ତଂକର ଝିଅ-ବୋହୂ ହେବେ । ଡକାୟତ-ମାନଂକ ମେଳରେ ସେ ଅନ୍ୟ ଚାରୋଟି ଜିଲ୍ଲାକୁ ଥରହର କରିଦେଲା । ବିଭିନ୍ନ ସ୍ଥାନରେ ଡକାୟତି କଲା । ଧନୀ ଲୋକମାନଂକୁ ଲୁଂଠନ କଲା । ବରଯାତ୍ରୀମାନଂକୁ ରାସ୍ତାରେ ବାଧା ଦେଲା । ବଣିଆମାନଂକର ସର୍ବନାଶ କଲା । ପୁଲିସ୍ ପାଖକୁ ଚାରିଆଡ଼ୁ ଜାଉଣା

ମୌଡ଼ର ମାଡ଼ ମିଟ୍ କଣବାର ଖବର ଆସୁଥିଲା । ପୁଲସ୍ ତା'ର ପିଚ୍ଛା କରୁଥିଲା; ହେଲେ ଜାଉଣା ମୌଡ଼ ଥରେହେଲେ ହାବୁଡ଼ରେ ପଡ଼ୁନଥିଲା । ଶେଷରେ ତା'ର ମୁଂଡ ପାଇଁ ପୁରସ୍କାର ଘୋଷଣା କରାଗଲା । ତା' ନାଁ ଶୁଣିଲେ ସମସ୍ତଂକର ପିଲେହ୍ଵ ପାଣି ହୋଇ ଯାଉଥିଲା; କିଂତୁ ତା' ନିଜ ଗାଆଁର ଲୋକେ ତା'କୁ ଆଶ୍ୱାସନା ଦେଇଥିଲେ ଯେ, ତୁ ଆମର ପୁଅ । ଆପଣା ଖୁସିରେ ଗାଁକୁ ଯା'ଆସ କର । ପୁଲସ୍ ଆସିଲେ ଏପଟ ସେପଟକୁ ଯାଇ ଲୁଚଯା' ।

ଲୁଂଠନ ସାମଗ୍ରୀ କଡ଼ଯ୍ୟାଲର ବଣିଆ କାଶୀରାମ ପାଖରେ ଗୁଚ୍ଛ ଦେଇ ଆସୁଥିଲା । କିଛିଦିନ ପରେ କାଶୀରାମର ମନଭିତରେ ବିଶ୍ୱାସଘାତକତା ବସା ବାଂଧିଲା । ସେ ପୁଲସ୍ ପାଖକୁ ଯାଇ ଖବର ଦେଇ ଆସିଲା ଯେ ଅମୁକ ଦିନ ଜାଉଣା ମୋ ଘରକୁ ଆସିବ । ପୁଲସ୍ ଆସି ପହଂଚଗଲା । ଜାଉଣା ମଧ ଚାଲିଆସୁଥାଏ; କିଂତୁ କୁଡ଼ୀଟିଏ ଧାଇଁଯାଇ ଜାଉଣାକୁ ଗାଁ ବାହାରେ ଦେଖାକଲା ଓ କହିଲା, "ଆରେ ଯାଯାବର ଜାଉଣା, ତୁ କାହା ଉପରେ ଭରସା କରି ବସିଛୁ ? ବଣିଆ ଜାତି ତ ମାଛି ମୁଂଡାଏ ପାଇଁ ଜୀବନ ଦେଇ-ଦେବେ । ତୁ' ଆଗକୁ ଯାଆନା, ପୁଲସ୍ ଛକି ବସିଛି ।"

ସେତେବେଳେ ତ ଜାଉଣା ପଛକୁ ଫେରିଗଲା; କିଂତୁ ପୁଲସ୍ ଚାଲିଗଲା ପରେ ସେ କାଶୀରାମକୁ ବହୁତ ମାଡ଼ ଦେଲା । କାଶୀରାମ କାକୁତି ମିନତି ହେଲା, ଗୋଡ଼ ତଳେ ପଡ଼ିଲା, ତା'ପରେ ଯାଇ ସେ ଗୁଚ୍ଛ ପାଇଲା ।

ଦିନେ ଜାଉଣା ଲୋଂଗୋବାଲ ପାଖଦେଇ ଯାଉଥାଏ । ଗାଁ ପାଖରେ ଝିଅମାନେ ଉତ୍ସବ ଦିନରେ ଦୋଳି ଝୁଲୁଥିଲେ । ସେ ସେଠି ଯାଇ ପହଚଂଗଲା । ଭୂଇଁରେ ଚାଦରଟିକୁ ବିଛାଇ ଦେଇ ଝିଅ-ବୋହୂମାନଂକୁ ଆଦେଶ ଦେଲା, "ସମସ୍ତେ ନିଜନିଜର ଗହଣା କାଢ଼ି ରଖିଦେଇ ଯାଆ ।" ଜୋର୍ ଯାର ମୁଲକ ତାର । ଗୁଚ୍ଛ ଉପରେ ପଥର ରଖି ସେମାନେ ଗହଣା କାଢ଼ି ଦେଇ ରଖିଦେଇ ଯାଉଥିଲେ । କିଏ ବା କଣ କହିପାରିବ ? ତାଂକ ଭିତରୁ ଜଣେ କହିଲା, "ଭାଇ ମୋର । ମୋ ଶଶୁରଘରର ଲୋକେ ସବୁବେଳେ ଗାଲିଗୁଲଜ କରଂତି । ସେମାନେ କହିବେ, ଯା ବାପଘରୁ ଗହଣା ଗଢ଼ାଇ ନେଇ ଆ । ମୋ ବାପା ତ ମୋର ବାହାଘରବେଳେ ଜମି ବଂଧା ରଖି କୌଣସି ପ୍ରକାରେ କାମ ଚଳାଇଥିଲା । ଆରେ ଭାଇ, ମୁଁ ତ ତୋର ଭଉଣୀ ଭଳି ହେବି ।"

ଜାଉଣା ମନକୁ କଣ ଆସିଲା କେଜାଣି, ସେ ସବୁ ଝିଅ-ବୋହୂଂକୁ କହିଲା, "ସମସ୍ତେ ନିଜନିଜର ଗହଣା ନେଇଯାଅ ।" ଖାଲି ଚାଦରଟିକୁ ଝାଡ଼ି ଦେଇ ସେ ବାହାରିଗଲା ।

ତା ପର ଗାଁ ଦେଇ ଯାଉଥିଲାବେଳେ ତା'ର ମନେପଡ଼ିଲା ଯେ ତାକୁ ବହୁତ ଭୋକ ହେଉଥିଲା । ଏପଟ ସେପଟକୁ ଅନାଇଲା । ଝିଅଟିଏ ରୁଟି ଧରି ବିଲ ଆଡ଼କୁ ଯାଉଥିଲା । ସେ ପାଖକୁ ଯାଇ କହିଲା, "ଭଉଣୀ, କ'ଣ ରୁଟି ଖାଇବାପାଇଁ ଦେବୁନି ?"

"ହଉ, ଭାଇ !" କହି ଝିଅଟି ମୁଂଡ ଉପରୁ ଘୋଳଦହିଥିବା ଲୋଟାଟି କାଢ଼ିଲା । କନା

ଦେହରେ ଗୁଡ଼ାହୋଇଥିବା ବୁଟିମାନ ବାହାରକଲା, ପିଆଜ ଛଡ଼ାଇଲା ଓ ଆମ୍ବର କାଟି ପତ୍ର ଉପରେ ଥୋଇଲା । ଝିଅଟି ଗଛମୂଳରେ ବସି ଜାଉଣା ମୌଡ଼କୁ ଖାଇବାକୁ ଦେଲା ।

"ଦୀର୍ଘାୟୁ ହୋଇଥା ଭଉଣୀ" କହି ଜାଉଣା ଝିଅଟିକୁ ପଚଶ ଟଂକା ଦେଲା ଓ ତା' ମୁଂଡ ଉପରେ ହାତ ବୁଲାଇ ଚାଲିଗଲା ।

କିଛିଦିନ ପରେ ସେ ଦୌଲେଆଲ ଗାଁରେ ଜଣକର ଅତି ସୁଂଦର ଘୋଡ଼ାଟିକୁ ନେଇଗଲା । ପଛପଟକୁ ଟାଣିହେବାରୁ ଖୁଣ୍ଟଟି ଉପୁଡ଼ି ଯାଇ ଜାଉଣାର ନାକରେ ଆଘାତ ଲାଗିଲା । ସେଠି ଦାଗ ପଡ଼ିଗଲା ।

ସେ ଘୋଡ଼ାରେ ଚଢ଼ି ଡୋଗରର ଗାଆଁରେ ପହଂଚିଲା । ସେ ପାଲ ହାତରେ ଖବର ଦେଲା ଯେ ଯଦି ତୁ ପ୍ରକୃତରେ ବାପର ପୁଅ, ତା'ହେଲେ ଆଗକୁ ଆସିଯା । ମୋ ଭାଇ ସାଥିରେ ବିଶ୍ୱାସଘାତକତା କରି ତାକୁ ଧରାପକାଇଥିଲୁ, ଏବେ ନୂଆ ଜୋଇଁ ହାବୁଡ଼ରୁ ଖସି କୁଆଡ଼େ ଯିବୁ ?

ଏଇ କଥା ଶୁଣି ଡୋଗରର ରକ୍ତ ତାତିଉଠିଲା । ସେ ବଂଧୁକରେ ଗୁଳି ଭର୍ତ୍ତିକଲା । ଗୁଳି ଗୁନ୍ଥା ହୋଇଥିବା ପଟିଟିକୁ କାଂଧରେ ପକାଇ ଘୋଡ଼ା ଦେହରେ ଜିନ ବାଂଧିଲା । କହିଲା, "ଜାଉଣା ମୌଡ଼ର ମୃତ୍ୟୁ ଆଜି ତାକୁ ଏଠାକୁ ଟାଣିଆଣିଛି ।"

ସେ ବାହାରିବା ସମୟରେ ଡୋଗରର ସ୍ତ୍ରୀ ତାକୁ କହିଲା, "ତୁ ସେଠିକି ଯାଆନା ।" ରାତିରେ ମୁଁ ବହୁତ ଖରାପ ସ୍ୱପ୍ନମାନ ଦେଖିଛି । ଗାଁରେ ନିଆଁ ଲାଗିଯାଇଛି ଓ ତୁ ତା' ଭିତରେ ଜଳିଯାଉଛୁ । କେହି ଜଣେ ମୋ ଜାମାରେ ଲାଗିଥିବା ଶିକୁଳି କାଟି ନେଇଛି ।"

କିଂତୁ ଡୋଗର କହିଲା, "ତୁ ଚିଂତା କରନା । ମୋ ଆଗରେ ଅବା ଶଳା ଜାଉଣା କିଏ ? କିଣନକୁ ତ କଳାପାଣି ପଠାଇଦେଇଥିଲି, ଏହାକୁ ଯଦି ନର୍କକୁ ପଠାଇ ନ ଦେଇଛି, ଦେଖିବୁ !"

ସେ ଘରୁ ବାହାରିଲା ସମୟରେ କୁକୁରଟିଏ କାନ ଝାଡ଼ିଲା ଓ କିଛି ଆଗରେ ସେ ମଡ଼ା ଦେଖିବାକୁ ପାଇଲା । ସେ ଭୟଭୀତ ହୋଇଉଠିଲା; କିଂତୁ ସେ ସେଆଡ଼କୁ ଧ୍ୟାନ ଦେଲାନାହିଁ । ଅଳ୍ପଦୂରକୁ ଗଲାପରେ ଜଣେ ବ୍ରାହ୍ମଣ ସହିତ ଦେଖାହେଲା । ବାଁପଟ କ୍ଷେତରୁ ତିତିରର ରାବ ଶୁଣିପାରିଲା । ଆଉ କିଛି ବାଟ ଗଲାପରେ ବିଧବା ସ୍ତ୍ରୀଲୋକଟିଏ ଛିଂକୁଥିଲା । ସବୁଯାକ ତ ଅଶୁଭ ଲକ୍ଷଣ ଥିଲା ।

ଡୋଗର ଥଳୀ ଭିତରୁ ବୋତଲରେ ବାନ୍ଧିଥିବା ମଦତକ କାଢ଼ି ମୁହଁରେ ଢାଳିଲା ଓ ଖାଲି ବୋତଲଟିକୁ ଦୂରକୁ ଫିଂଗିଦେଲା । ସେ ନିଶକୁ ମୋଡ଼ି ପଡ଼ିଆରେ ପହଂଚିଲା ।

ଜାଉଣା କହିଲା, "ଆରେ ଡୋଗର, କୌଣସି ବୀର କାହାକୁ ହେଲେ ପ୍ରତାରଣା କରି ହତ୍ୟା କରେ ନାହିଁ । ତୁ ପ୍ରଥମେ ଗୁଳି ଚଳା ।"

ଡୋଗର ଗୁଳି ଚଳାଇଲା । ଜାଉଣାର ଘୋଡ଼ା ତଳକୁ ନଇଁଗଲା । ଗୁଳି ମୁଂଡ ଉପରଦେଇ ଚାଲିଗଲା । ଡୋଗର ପୁଣି ଗୁଳିଚଳାଇଲା । ଜାଉଣା ନିଜକୁ ରକ୍ଷାକରି

ପରମୁହୂର୍ତ୍ତିରେ ଡୋଗର ଦେହକୁ ଲକ୍ଷ୍ୟ କରି ଗୁଳିଚଳାଇଲା । ଡୋଗର ଘୋଡ଼ାଉପରୁ ଟଳିପଡ଼ିଲା ।

ଡୋଗର ଘରେ କାଂଦବୋବାଳି ପଡ଼ିଗଲା । ଏ ପଟେ କେହି ଜଣେ ଯାଇ ମୌଡ଼ ଗ୍ରାମରେ ଖବର ଦେଇଦେଲା ଯେ ଜୀଉଣା ଡୋଗରକୁ ହତ୍ୟା କରି କିଶନର ମୃତ୍ୟୁର ପ୍ରତିଶୋଧ ନେଇଯାଇଛି । ଲୋକେ କହିବାକୁ ଲାଗିଲେ, "ଧନ୍ୟ ଏମିତି ଭାଇକୁ । ଭାଇ ହେବ ତ ଏମିତି ।"

ଜୀଉଣାକୁ ଧରିବା ପାଇଁ ବଲୋଡ଼ରୁ ପୁଲିସ୍ ମାଡ଼ିଆସିଲେ । ହେଲେ ଏତେ ଶୀଘ୍ର ଜୀଉଣା ପୁଲିସ୍ ହାବୁଡ଼ରେ ପଡ଼ିବା ଲୋକ ନଥିଲା ।

ଡୋଗରକୁ ହତ୍ୟାକରିବା ପରେ ଜୀଉଣା ଦିନେ ରାତିଅଧରେ ନିଜ ଘରେ ଯାଇ ପହଂଚିଲା । ସେ ବାପର ପାଦତଳେ ମୁଂଡ ଥୋଇଲା ।

"କାହିଁକି ବୃଦ୍ଧ ବୟସରେ ମୋର ମାନମର୍ଯ୍ୟାଦାକୁ ନଷ୍ଟ କରୁଛୁ ? ତୁ ବରଂ ଜନ୍ମ ହୋଇନଥିଲେ ଭଲ ହୋଇଥାଆନ୍ତା । ମୁଁ ଅପୁତ୍ରକ ଥିଲେ ବେଶି ଖୁସି ହୋଇଥାଆନ୍ତି । ପୋଲିସ୍ ଯେତେବେଳେ ଇଚ୍ଛା ସେତେବେଳେ ଆସୁଛି । ଝିଅବୋହୂମାନଂକର ପଦାକୁ ଗୋଡ଼ କାଢ଼ିବା ମଧ୍ୟ ମୁସ୍କିଲ ହୋଇପଡ଼ିଲାଣି ।"

ଜୀଉଣା କହିଲା, "ବାପା ! କାହିଁକି ରାଗ କରୁଛ । ମୋର ଯାହା କରିବା କଥା ତାହା ତୁଲେଇ ଦେଇଛୁ । ଯଦି କହିବ କାଲି ଯାଇ ଥାନାରେ ହାଜର ହୋଇଯିବି ।"

"ଥାନା ! ନା...ନା...ସେମାନେ ତୋର ରକ୍ତ ଶୋଷିନେବାପାଇଁ ବୁଲୁଛଂତି । ତୋତେ ସେମାନେ ଗୁଳି କରିଦେବେ । ସରକାର ତୋ ମୁଣ୍ଡପାଇଁ ପାଞ୍ଚଶହ ଟଂକା ଘୋଷଣା କରିଛି । ଆମ ଗାଆଁ ଲୋକମାନେ ଭଲ ଲୋକ ବୋଲି ସିନା, ନ ହେଲେ ପୁଲିସ୍ କେବେଠୁ ତୋ'ର ଖବର ପାଇସାରିଥାଆଂତାଣି । ତୁ କାଲି ସକାଳୁ ଏଇଠୁ ଚାଲିଯା' । ମୁଁ ଏବେ ତୋ ପାଇଁ ରୁଟି ଆଣିଦେଉଛି । ମୋ ବଂଶର ନାମ ତୋ'ରି ଉପରେ ନିର୍ଭର କରୁଛି । ମୋର ବା କଣ ଅଛି; ଆଜି ଅଛି ତ କାଲି ନାହିଁ ।"

କିଛିଦିନ ପରେ ଜୀଉଣା ଓ ତାର ସହଚରମାନେ ଏକ ବରଯାତ୍ରୀଦଳକୁ ଘେରିଗଲେ । ବାହା ହୋଇ ଯାଉଥିବା ବୋହୂର ଗହଣାଗାଂଠି କାଢ଼ିନେଲେ । ବରଯାତ୍ରୀମାନଂକ ପାଖରୁ ଟଂକାପଇସା ସବୁ ଛଡ଼ାଇ ନେଲେ । ନାକରେ ଥିବା ଦାଗ ଦେଖି ଜାଠ ତାକୁ ଚିହ୍ନିପାରିଲା ଯେ ସେ ଜୀଉଣା ମୌଡ଼ । ଜାଠ ହାତଯୋଡ଼ି ପ୍ରାର୍ଥନା କଲା, "ଜମି ବଂଧା ରଖି ମୁଁ ପୁଅର ବାହାଘର କରିଛି । ମାଗିଯାଚି ବୋହୂକୁ ଗହଣା ପିନ୍ଧାଇଛି । ଭଗବାନ ତୋର ମଂଗଳ କରଂତୁ; ତୁ ତ ଆମରି ନିଜର ଜାଠଭାଇ । ଲୁଟିବାର ଅଛି ତ ଯା' ମହାଜନ ସାହୁକାରମାନଂକୁ ଲୁଟିଦେ; ସେମାନେ ଅନ୍ୟମାନଂକୁ ଲୁଟିଛଂତି ।"

ଏହା ଶୁଣି ଜୀଉଣା ମୌଡ଼ ସବୁଯାକ ଗହଣାଗାଣ୍ଠି ଫେରାଇଦେଲା । ନିଜ ହାତରୁ ହଜାରେ ଟଂକା ଦେଇ 'ସତ ସିସ୍ରୀ ଅକାଲ' କହି ସେଠାରୁ ବାହାରିଗଲା । ଜାଠମାନେ

ଆଶୀର୍ବାଦ ଦେବାକୁ ଲାଗିଲେ, "ଭାଇ ଜାଉଣା ମୌଡ଼ ଦୀର୍ଘାୟୁ ହେଉ ।"

ଦିନେ ଜାଉଣା ମନକୁ କ'ଣ ଆସିଲା କେଜାଣି, ସେ ନାଭିର ରାଜା ହୀରାସିଂହର ନଅରକୁ ଯାଇ ତା'ର ଘୋଡ଼ାଟିକୁ ନେଇ ଆସିଲା । ବଂଧୁକ ଦେଖାଇ ପ୍ରହରୀମାନଂକୁ ଧମକ ଦେଲା । ଆସିଲା ବେଳକୁ କହିଦେଇ ଆସିଲା, "ମହାରାଜାକୁ କହିଦେବ ଜାଉଣା ମୌଡ଼ ତୋ'ର ଘୋଡ଼ା ନେଇଯାଇଛି ।"

ଲୋକେ ଆଶ୍ଚର୍ଯ୍ୟ ହେଲେ ଯେ ଜାଉଣା ମୌଡ଼ କେମିତି ଅବା ଘୋଡ଼ାଟିକୁ ନେଇଗଲା । ରାଜା ତା' ପଛରେ ଅସଂଖ୍ୟ ପୋଲିସ ପଠାଇଲେ । ଶେଷରେ ପୋଲିସମାନେ ଗୋଟାଏ ଜାଗାରେ ଜାଉଣା ଶୋଇଥିବା ସମୟରେ ତାକୁ ଘେରିଯାଇ ଧରିପକାଇଲେ ।

"ହସ୍‌ସ କେ ଜାଉଣା ଅଂଟଦା ଘୋଡ଼ୀ ବଡ଼ୀ କମାଲ,
ବକ୍‌କୀ ସାଂଭଲଓ ଆପଣୀ ମୈଁ ଦେଖୀ ସୀ ଚାଲ ।" (୧)

ତା' ପରଦିନ ରାଜା ତାକୁ ବଂଦିଶାଳାରେ ଦେଖାକରିବାକୁ ଆସିଲେ । ତା'ର ଭଲ-ମଂଦ କଥା ପଚାରିଲେ । ସେ କହିଲା "ବଂଦୀମାନଂକ ପାଇଁ ଲୁହା ପିଂଜରା ତିଆରି କର, ଏମିତି କାରାଗାରରୁ ତ ସେମାନେ ଖସିଯାଇ ପାରଂତି ।" ମହାରାଜ ହସି ପକାଇଲେ ଓ କହିଲେ, "ଆଚ୍ଛା, ତୁ ଥରେ ଖସିଯାଇ ଦେଖା ।" କାରଣ ମହାରାଜା ଭଲଭାବରେ ଜାଣିଥିଲେ ଯେ ଏତେ କଡ଼ା ପହରା ଭିତରେ, ଲୁହାବାଡ଼ ଲାଗିଥିବା ଦରଜା ଦେଇ, କାରାଗାରର ଉଚ୍ଚ ପାଚେରି ଲଂଘନ କରି କିଏ କ'ଣ ଖସି ଯାଇପାରେ !

ସେଇଦିନ ରାତିରେ ଜାଉଣା ବଂଦିଶାଳାରୁ ଖସିଗଲା ।

ଜାଉଣା ମୌଡ଼ର ନାମରେ ଲୋକେ ବିଭିନ୍ନ ସ୍ଥାନରେ ଡକାୟତି କରିବାକୁ ଲାଗିଲେ । ଭୟରେ ପୋଲିସ ମଧ୍ୟ ଶୀଘ୍ର ଠିକ୍ ସମୟରେ ପହଂଚୁ ନଥିଲା ।

ଦିନେ ଜଣେ ବ୍ରାହ୍ମଣ ତା'ର ଝିଅକୁ ଶ୍ୱଶୁରଘରୁ ଆଣୁଥିଲା । ଜଂଗଲ ଭିତରେ ତା'କୁ ତସ୍କରମାନେ ଘେରିଗଲେ । ଝିଅଟି ଯେତେବେଳେ ଦେଖିପାରିଲା ଯେ ତସ୍କରମାନଂକ ଆଗରେ ଷାଠିଏ ବର୍ଷର ବ୍ରାହ୍ମଣ କିଛି ନୁହେଁ, ସେ ଭୟରେ ଚିତ୍କାର କରିବାକୁ ଲାଗିଲା । ଦୈବକ୍ରମେ ଜାଉଣା ମୌଡ଼ ସେଇ ବାଟ ଦେଇ ଯାଉଥିଲା । ସେ ସେଇ ତସ୍କରମାନଂକୁ ଘେରିଗଲା ।

"ତୁ ଏଥିରେ ଦଖଲ ଦେବାକୁ କିଏ ?" ଜଣେ ତସ୍କର କହିଲା ।

"ମୁଁ ତୋର ବାପା ଜାଉଣା ମୌଡ଼ ।" ସେ ଗର୍ଜି ଉଠିଲା ।

ତସ୍କରମାନେ ଭୟରେ ଥରହର ହେବାକୁ ଲାଗିଲେ ଓ ତା' ଗୋଡ଼ତଳେ ପଡ଼ିଗଲେ । ସେ ତାଂକୁ ଜୋତାରେ ପିଟିପିଟି ବିଦାକଲା ଏବଂ ବ୍ରାହ୍ମଣ ଓ ଝିଅଟିକୁ ତାଂକର ଗଂତବ୍ୟ

(୧) ହସି ହସି ଜାଉଣା କହୁଛି, ଚମତ୍କାର ଘୋଡ଼ାଟିଏ ଫୋଇଛି । ନିଜ ଘୋଡ଼ା ରଖ, ମୁଁ ତ କେବଳ ତା'ର ଚାଲି ଦେଖୁଥିଲି ।

ସ୍ଥାନରେ ପହଂଚିଇ ଦେଲା । ବ୍ରାହ୍ମଣ ତାକୁ ଶତ ଆଶୀର୍ବାଦ ଦେଲା ଓ ଘର ଘର ବୁଲି ବୁଲି ଗୀତ ଗାଇ ଆଡ଼େ ଦୀନ ଦରିଦ୍ରର ରକ୍ଷକ ରୂପରେ ଜାଉଣା ମୌଡ଼ର ଯଶୋଗାନ କରିବାକୁ ଲାଗିଲା ।

ସେ ସମୟର କବିମାନେ ଗୀତ ଯୋଡ଼ିଲେ :

ଜାଉଣା ମୌଡ଼ ସାଧ ଗଊ ଗରୀବ ଦୀ କରେ ସେବା,
ଖରିବୀ ଖାନାଁ ଦୀ ଅଲଖ ମୁକାଊଁ ଦା ଜୀ ।
ଜେଡ଼େ ବାଦଶାହ ଦେ ଘର କରେ ଚୋରୀ,
ପର୍ଚ୍ଚେ ଗ୍ରୁପ କେ ପହଲାଁ ଲଗାଂ ବଦା ଜୀ ।
ଶୀହମା ମାଁ ନେ ଜମ୍ନେଦା ଶେର ଜାଉଣା,
ନହୀଁ ଲୁକ୍‌କେ ବକତ ଲଂଘାବଦା ଜୀ । (୧)

ତନେ ଜାଉଣା ମୌଡ଼ ଭାବିଲା ଯେ ଦେବୀମାତା ତାର ପ୍ରତ୍ୟେକ ସ୍ଥାନରେ ତାକୁ ରକ୍ଷା କରୁଛଂତି; ତାଂକ ଦର୍ଶନ ପାଇଁ ଯିବା ଉଚିତ ।

ସେ ସବୁ ରାଜାମାନଂକୁ ଖବର ଦେଲା, "ନୈନା ଦେବୀଂକ ମଂଦିରକୁ ଯିବି ମୁଁ । ଯାହାଂକ ଦ୍ୱାରା ସୈନ୍ୟମାନଂକର ନାକକାନ ମୋଡ଼ିଛି ମୁଁ । ତାଂକୁ ସୁନାର ଛତ୍ର ଚଢ଼ାଇ ଆସିବି ମୁଁ । ପ୍ରସ୍ତୁତ ହୋଇ ଆସ ଧରିବା ପାଇଁ ମୋତେ, ମୃତ୍ୟୁକୁ ଡରି ମୁହଁ ଲୁଚାଇବି ନାହିଁ ମୁଁ ।"

ନୈନା ଦେବୀଂକ ଦର୍ଶନ ପାଇଁ ଯିବା ବାଟରେ ସେ ପାତିଆଲା ସହରର ପୁଲିସ୍ ପୋଷାକ ପିଂଧି ହାବିଲ୍‌ଦାରର ବେଶ ଧାରଣ କଲା । ସେ ଦୁର୍ଗର ପାଚେରି ଦେହରେ କାଗଜରେ ଲେଖି ଲଗାଇଦେଲା ଯେ ଜାଉଣା ମୌଡ଼ ଅଦାଲତ ବଜାରରେ ଚାଲିବୁଲି କରୁଛି; ଯାହାର ଶକ୍ତି ଅଛି ତା'କୁ ଧରନ୍ତୁ । ସଂଧ୍ୟା ୬ଟା ସମୟରେ ସେ ନୈନାଦେବୀ ମଂଦିର ଉଦ୍ଦେଶ୍ୟରେ ଷ୍ଟେସନରୁ ଗାଡ଼ି ଧରିବ ।

ଚାରିଆଡ଼େ ପୁଲିସ୍ ଖୋଲାଇ ହୋଇ ପଡ଼ିଲେ । ସବୁଯାକ ରାସ୍ତା ବନ୍ଦ ଥିଲା । ତଥାପି ସମସ୍ତଂକର ଆଖିରେ ଧୂଳିଗୁଣ୍ଡି ଫିଙ୍ଗି ଠିକ୍ ୬ଟା ସମୟରେ ଜାଉଣା ମୌଡ଼ ସାଧୁବେଶ ହୋଇ ନୈନାଦେବୀ ଯିବାପାଇଁ ଗାଡ଼ି ଧରିଲା ।

ପୋଲିସ୍ ମଧ୍ୟ ସାଂଗରେ ଲାଗିରହିଥାଏ । ସବୁଯାକ ଡବାରେ ତନ୍ନତନ୍ନ କରି ଖୋଜା ହେଲା । କିଂତୁ ସେମାନେ କେଉଁଠାରେ ମଧ୍ୟ ଜାଉଣା ମୌଡ଼ର ଦର୍ଶନ ପାଇଲେ ନାହିଁ ।

(୧) ଜାଉଣା ମୌଡ଼ ସାଧୁ, ଗାଈ ଓ ଗରିବମାନଂକର ସେବା କରେ । ଅତି ବଡ଼ ବଡ଼ ଗର୍ବୀମାନଂକର ଅହଂକାର ଭାଂଗିଦିଏ । ସେ ବାଦଶାହ ଘରେ ଚୋରି କରିବା ଆଗରୁ ଲେଖିଦେଇ ଚିପିଦିଏ । ସିଂହ ମାଆ ଜାଉଣା ସିଂହକୁ ଜନ୍ମ ଦେଇଛି । ସେ ଲୁଚିଲୁଚି ଜୀବନ ଅତିବାହିତ କରେନାହିଁ ।

ଜାଉଣା ମୌଡ଼ ଗାଡ଼ିରୁ ଓହ୍ଲାଇ ସବାପ୍ରଥମେ ଆନଂଦପୁର ସାହବର ଗୁରୁଦ୍ୱାରରେ ଦଶମ ଗୁରୁଂକ ଉଦ୍ଦେଶ୍ୟରେ ଶହେପଚଶଟି ଟଂକା ଚଢ଼ାଇବା ପାଇଁ ଗଲା । ଦଶମଗୁରୁ ଜନ୍ମଭୂମି ଭାରତର ହିତ ପାଇଁ ନିଜର ଚାରିଜଣ ପୁଅଂକୁ ବଳି ଦେଇଥିଲେ ।

ଏଥର ସେ ନୈନା ଦେବୀଂକ ମଂଦିରରେ ପହଂଚିଲା । ପୁଲିସ୍ ଚତୁର୍ଦ୍ଦିଗରୁ ମଂଦିରକୁ ଘେରିରଖିଥାଏ । ସେ ଦେବୀଂକର ମଂଦିର ଭିତରେ ସୁନା ଛତ୍ର ଚଢ଼ାଇଲା । ଦେବୀଂକ ପାଦତଳେ ମୁଂଡ଼ ଛୁଆଁଇଲା । ଦେବୀ ତାକୁ ଦର୍ଶନ ଦେଲେ । ଜାଉଣା ଜୀବନ-ମରଣର ଶଂକା ତ୍ୟାଗ କଲା ।

ପୁଲିସ୍ ଘେର ଶ୍ରେଷ୍ଠ ହୋଇ ଆସିଲା । ନାକର ଦାଗ ଯୋଗୁଁ ଜାଉଣା ଚହ୍ନା ପଡ଼ିଗଲା । ଗିରଫ କରିବା ପାଇଁ ଗଲାବେଳେ ଜାଉଣା ସାଧୁ ଚମୁଟାରେ ଆଘାତ କଲା । ପାଞ୍ଚ-ଦଶ ଜଣ ପୁଲିସ୍ ଟଳିପଡ଼ିଲେ । ଗୁଳି ଚାଲିଲା । ଜାଉଣା ପାଖରେ ରାଇଫଲ ନଥିଲା ।

ଶେଷକୁ ଜାଉଣା ଧରାପଡ଼ି ଗିରଫ ହେଲା । ସେ ଦେବୀଂକ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇ ପୁଲିସ୍ ସାଥିରେ ବାହାରିଗଲା ।

ଶହ ଶହ ପୋଲିସ୍ ସିପାହିଂକର ସତର୍କ ପହରା ଭିତରେ ତାକୁ ଫିରୋଜପୁର ଜେଲକୁ ଅଣାଗଲା ।

ପୁଣି ଥରେ ବିଲାତର ସାମ୍ରାଜ୍ଞୀଂକ ପାଖକୁ ତାରବାର୍ତ୍ତା ପ୍ରେରଣ କରାଗଲା ଯେ କଣନ ଡାକୁର ଭାଇ ଜାଉଣା ଧରାପଡ଼ିଛି ।

ସାମ୍ରାଜ୍ଞୀଙ୍କ ପାଖରୁ ଫାଶୀର ଆଦେଶ ମିଳିଲା ।

ଆଠଦିନ ପରେ ଫାଶୀର ଦିନ ଧାର୍ଯ୍ୟ ହେଲା । ରାଜକର୍ମଚାରୀମାନେ ତାକୁ କହିଲେ, "ତୋର ଯାହା ଇଚ୍ଛା ତାହା ଖାଇପିଇନେ । ତୋର ଯାହାକୁ ମନ ତା' ସହିତ ସାକ୍ଷାତ କରନେ ।"

ଜାଉଣା ସିଂହ ଉତ୍ତର ଦେଲା, "କେବଳ ଖାଇବା ପିଇବା ପାଇଁ ମୁଁ ପୃଥିବୀକୁ ଆସିନଥିଲି । ସଂସାର ମନେରଖିବ ଯେ ଭାଇ ଭାଇ ଦେଉଛଂତି ପରସ୍ପରର ହାତ । ବାକୀ ରହିଲା ଭେଟ ହେବା କଥା । ଯାହାର ମନ ବ୍ୟାକୁଳ ହେବ ସେ ନିଜେ ଦେଖାକରିବା ପାଇଁ ଚାଲିଆସିବ ।

ଜାଉଣାର ଜଣେ ଭଉଣୀ ଥିଲା—ଗୋବିଂଦୀ । ସେ ଅନେକ ଚେଷ୍ଟାକଲା । ବଡ଼ଲାଟ ପର୍ଯ୍ୟଂତ ମୋକଦ୍ଦମା ଗଲା; କିଂତୁ ସବୁ ବୃଥା ହେଲା ।

ଶେଷରେ ଅଷ୍ଟମ ଦିନ ମଧ୍ୟ ଆସି ଉପସ୍ଥିତ ହେଲା । ସମସ୍ତଂକୁ ସତସିରୀ ଅକାଲ୍ ଜଣାଇ ଜାଉଣା ମୌଡ଼ ଫାଶୀ କାଠରେ ଝୁଲିପଡ଼ିଲା ।

ଭଉଣୀ ଗୋବିଂଦୀ ବିଳାପ କରିବାକୁ ଲାଗିଲା :

'ବେ ତୀୟାଁ ଦେ ଦିନ ଆଁନ୍, ଉଡୀକାଁ ଗୀ,
କୌନ ଭେଜୁଗା ସଂଧାରେ ବେ ମେରେୟା ସୁରମେଆଁ ବୀର୍ ।' (୧)

ଏଭଳି ଭାବରେ ଜୀଉଣା ମୌଡ଼ ପୃଥିବୀରେ ନିଜର ସୁନାମ ରଖିଦେଇ ଗଲା । ସଂସାର ଥିଲାଯାଏ ଲୋକେ ତାକୁ ମନେ ରଖିବେ ।

"ଭାବେଁ ଘର-ଘର ପୁତ୍ତ ଜମ୍ମଦେ
ଜୀଉଣା ମୌଡ଼ ନା କିସେ ବଣ ଜାଣା ।"

———

(୧) ତୀଜ (ଶ୍ରାବଣ-ତୃତୀୟା ଦିନ ଭାଇମାନଂକ ପାଇଁ ଭଉଣୀମାନେ ପାଳୁଥିବା ପର୍ବ) ଦିନ କାହାପାଇଁ ଅପେକ୍ଷା କରିବ, ସେଦିନ କିଏ ମୋ ପାଖକୁ ଉପହାର ପଠାଇଦେବ—ହେ ମୋର ବୀର ଭାଇ !

ଗୁଲଜାର ସିଂହ ସଂଧୁ

# ଚକୈମା ମଲକୀ

ଗଢ଼ ମୁଗଲନେ ଦୀଆଁ ନାରାଁ ପୀଙ୍ଘୁଁ ଛୁଟଦୀଆଁ ।'' (୧)

ଗାଜ-ପର୍ବର ଲୋକନୃତ୍ୟ ପୂର୍ଣ୍ଣ ଦମ୍‌ରେ ଚାଲିଥିଲ । ନାଚୁଥିବା ଝିଅମାନେ ଅଶ୍ୱତ୍ଥ ଗଛର ଛାଇରେ ଗୀତ ଓ ନାଚର ତାଳ ସହିତ ମିଳାଇ ଦୋଳରେ ବସିଥିବା ଝିଅ-ମାନଂକୁ ଝୁଲଉଥିଲେ । ଗଢ଼ ମୁଗଲନାର ଏଇ ଅଶ୍ୱତ୍ଥ ଗଛର ଦୋଳ ସୀମାଂତ ଅଂଚଳରେ ଅନେକ ଦୂରବ୍ୟାପୀ ପ୍ରସିଦ୍ଧ ଥିଲ । କେଜାଣେ କେତେ ପୁରୁଷଧରି ଏଇ ଅଶ୍ୱତ୍ଥ ଗଛ ଝିଅମାନଂକୁ ଦୋଳ ଝୁଲଇ ଆସୁଥିଲ । ଏହାର ଡାଳମାନ ଖୁବ୍ ଶକ୍ତ ଥିଲ ଓ ପତ୍ରଗୁଡ଼ିକ ଖୁବ୍ ଘଞ୍ଚ ଥିଲ । ମୁଖିଆର ଝିଅ ମଲକୀ ଲୋକନୃତ୍ୟର ଅଗ୍ରଣୀ ଥିଲ । ସେ ଦୋଳରେ ଚଢ଼ିଲାବେଳେ ଅଶ୍ୱତ୍ଥ ଗଛର ଚେର ପର୍ଯ୍ୟଂତ ଦୋହଲିଯାଉଥିଲ ।

ମଲକୀର ବାପ ଗାମ୍ମୁ ମୁବାରକ କେବଳ ଯେ ଗାଆଁର ମୁଖିଆ ଥିଲ ତା' ନୁହେଁ; ସେ ଆଖପାଖ ଅଞ୍ଚଳର ଜଣେ ପ୍ରତିଷ୍ଠିତ ବ୍ୟକ୍ତି ମଧ୍ୟ ଥିଲ । ତା'ର ଦୁଇ ପୁଅ ଗଛର ଗଂଡି ଭଳି ଶକ୍ତ ଓ ବଳିଷ୍ଠ ଯୁବକ ଥିଲେ । ପୁଅମାନଂକର ନାମ ରହ୍ମନ ଓ ମହବୁନ ଥିଲ । ଗାମ୍ମୁ ମୁବାରକର ଭାଇ ଦରିୟା ଆକବରଂକ ଦରବାରରେ ସୁବେଦାର ଥିଲ । ସରକାରୀ ଦରବାରରେ ମଧ୍ୟ ସ୍ଥାନ ଲାଭ କରିଥିବା ହେତୁ ଏଇ ପରିବାରର ପ୍ରତିପତ୍ତି ଆହୁରି ବଢ଼ିଯାଇଥିଲ । ଗାମ୍ମୁ ମୁବାରକ, ଦରିୟା, ରହ୍ମନ ଓ ମହବୁନ ଜଣେ ଅନ୍ୟଜଣଙ୍କଠାରୁ ମାତ୍ର ଚାରିଛଅ ବର୍ଷର ସାନବଡ଼ ଥିଲେ । ସେମାନଂକୁ ଏକାସାଂଗରେ ଦେଖିଲେ ଭାଇ ଭାଇ ଭଳି ମନେ ହେଉଥିଲା । ଲୋକେ ଚାରିଜଣଯାକଂକୁ ଗାଆଁର ରକ୍ଷକ ବୋଲି ମାନୁଥିଲେ । ସେମାନେ ଲାଠି ଧରି ଠିଆହୋଇଗଲେ ପବନର ମଧ୍ୟ ଗତି ବଦଳିଯାଉଥିଲ ।

ପିତାମାତାଂକର ପ୍ରତିପତ୍ତି ଯୋଗୁଁ ମଲକୀ ମଧ୍ୟ ସାହସୀ ଥିଲ । ତା'ର କପାଳ ଚତୁର୍ଥୀର ଜହ୍ନପରି ତୋଫା ଥିଲ । ସେ କୌଣସି ହାର୍ କିଂବା ସପ୍‌ସୀଠାରୁ କୌଣସି

(୧) ଗଢ଼ ମୁଗଲନାର ନାରୀମାନେ ଦୋଳ ଝୁଲୁଥିଲେ ।

ଗୁଣରେ ଊଣା ନଥିଲା—ସେ ଥିଲା ଗାଆଁର ମର୍ଯ୍ୟାଦା ଓ ସାରା ଅଂଚଳର ଗର୍ବ । ଭରା ଯୌବନର ପ୍ରଭାବରେ ସେ ବୟସର ଚପଳତା ପ୍ରତି ଅଭିଜ୍ଞ ଥିଲା । କିଂତୁ ସେ ଯୌବନର ଦୁଃଖ କିଛି ଜାଣିନଥିଲା । ମଲକୀ ସ୍ୱପ୍ନରେ ସୁଦ୍ଧା ଭାବିନଥିଲା ଯେ ଦିନେ ଯୌବନର ଦୋଳି ଛିଂଡି ମଧ୍ୟ ଯାଇପାରେ । ଏପରିକି ଯେଉଁ ଡାଳରେ ଦୋଳି ବଂଧା ହୋଇଥିଲା ସେହି ଡାଳଟି ଭାଂଗି ମଧ୍ୟ ଯାଇପାରେ ।

ମଲକୀର ମା' ଗୋଂଦଲକୁ ଯେମିତି ଝିଅର ଯୌବନ ଖାଇଯାଉଥିଲା । ଘରେ ବଢ଼ିଲା ଝିଅ ରହିଲେ କେଉଁ ମା' ଅବା ନିଶ୍ଚିଂତରେ ଶୋଇପାରେ ? କୌଣସି ଗ୍ରୋଟିଆ କଥାଟିଏ ନେଇ ମୋଗଲ ପରିବାରର ମର୍ଯ୍ୟାଦା ଧୂଳିସାତ୍ ହୋଇଯିବା ଅସଂଭବ କଥା ନୁହେଁ । ଯେ ପର୍ଯ୍ୟଂତ ଯୁବତୀ ଝିଅର ହାତକୁ ଦି'ହାତ କରି ତାକୁ ତା' ଘରକୁ ବିଦା କରା ନ ଯାଇଛି ସେ ପର୍ଯ୍ୟଂତ ମାଆର ମନରେ ଶାଂତି ନଥିଲା । ବାପ ଏମିତି ଥିଲା ଯେ କୌଣସି କଥା ଶୁଣୁନଥିଲା । ତାକୁ ନିଜ ଝିଅ ଗତକାଲିର ଶିଶୁ ମନେ ହେଉଥିଲା । ଗୋଂଦଲ ପାଇଁ କେଜାଣେ କେଉଁ ପ୍ରଳୟ ଆସିଯାଉଥିଲା । ଯୌବନ କଥା ତ । ସେ ଭାବୁଥିଲା କାହା ଦେହରେ ଅବା ଯୌବନ ଆସେନି ।

ବାପ ଶେଷରେ ବିରକ୍ତ ହୋଇ ସାନଭାଇ ଦରିୟା ପାଖକୁ ଚିଠି ଲେଖିଲା । ମଲକୀ ଯେମିତି ରାୟ ମୁବାରକର ଝିଅ ଥିଲା ସେମିତି ତା'ର ମଧ୍ୟ ଝିଅ ଥିଲା । ଝିଅର କଥା ହେଉଛି ସମସ୍ତଂକର ମର୍ଯ୍ୟାଦାର ବିଷୟ । ଦରିୟା ସରକାରୀ ଦରବାରରେ ଏକ ଯୋଗ୍ୟପାତ୍ରର ସଂଧାନ ନେଇ ପାରିବ । ଫଳରେ ଅନ୍ୟ କିଛି ଲାଭ ହେଉ ନହେଉ, ଏତିକି ହେଲା ଯେ ମଲକୀର ମାଆ ଘରର ଲୋକମାନଂକୁ ଆଉ ବାହାକଥା କହି ବ୍ୟସ୍ତ କଲନାହିଁ ।

ଗୋଂଦଲ କିଂତୁ ଏହି କଥା ଯୋଗୁଁ ଆନନ୍ଦିତ ହେବା ସଂଗେ ସଂଗେ ଦୁଃଖିତ ମଧ୍ୟ ଥିଲା । ଖୁସି ଥିଲା, କାରଣ ଝିଅପାଇଁ ପାତ୍ରଖୋଜା ଆରଂଭ ହୋଇଯାଇଥିଲା । ଦୁଃଖର କାରଣ ହେଲା, ଯଦି ଦରିୟା କୌଣସି ଯୋଗ୍ୟ ପାତ୍ର ପାଇଯାଏ ତାହେଲେ ଗୋଂଦଲ ଆଉ ନିଜ କଥାର ପୁନରାବୃତ୍ତି କରି ପାରିବ ନାହିଁ । କଥା ହେଉଛି, ଗୋଂଦଲର ଜଣେ ସଂପର୍କୀୟ ଭଉଣୀ ଲାଲୋ ତଖ୍ତ ହଜାରାର ସର୍ଦ୍ଦାର ଦୁଲାରକୁ ବାହା ହୋଇଥିଲା । ଲାଲୋର ବଡ଼ପୁଅର ଜନ୍ମ ସମୟରେ ସଂତାନର ପ୍ରସବ ପାଇଁ ଗୋଂଦଲ ତଖ୍ତ ହଜାରାକୁ ଯାଇଥିଲା । ଭଉଣୀ ଘରେ ଯେଉଁ ବାଳକ ଜନ୍ମ ହୋଇଥିଲା, ସେ ସୂର୍ଯ୍ୟଠାରୁ ବଳି ଉଜ୍ଜ୍ୱଳ ଥିଲା । ଗୋଂଦଲ ଏହି ବାଳକ କୈମାକୁ ନିଜ ପୁଅଠାରୁ ମଧ୍ୟ ଅଧିକ ଭଲପାଉଥିଲା । ସେ ସହନଶୀଳ ଥିଲା । ପିଲାମିରା ବେଶି କରୁ ନଥିଲା । ଗୋଂଦଲର ଦୃଢ଼ବିଶ୍ୱାସ ଥିଲା ଯେ କୈମା ବଡ଼ ହେଲେ ସୁଶୀଳ ଓ ଶାଂତଶିଷ୍ଟ ସ୍ୱଭାବଯୁକ୍ତ ପୁରୁଷ ହେବ । ଗୋଂଦଲ ଗାଉଣ ଯୁବକ ଓ ରାଗୀ ପରିବାର ଭିତରେ ରହି ରହି ବିରକ୍ତରେ ଅତିଷ୍ଠ ହୋଇ ସାରିଥିଲା । ସେ ଭଉଣୀ ଲାଲୋକୁ କଥା ଦେଇଥିଲା ଯେ ଯଦି ଅଲ୍ଲାଂକର କୃପା ହୁଏ ତା'ହେଲେ ତଖ୍ତ ହଜାରା ଓ ଗଢ଼ ମୁଗଲାନାର ସଂପର୍କ ପୁରୁଷାନୁକ୍ରମେ ପ୍ରତିଷ୍ଠିତ ହୋଇ ରହିବ ।

ଆଲ୍ଲାଂକର କୃପାର ଅର୍ଥ ଥିଲା ତା' ନିଜ କୋଳରେ ଝିଅ ହେବା କଥା । ଦୁଇଟି ପୁଅ ଜନ୍ମ ହେଲାପରେ ସେ ପୀରଙ୍କୁ ଝିଅ ମାଗିଥିଲା । ପୀର୍ କେବେ କାହାକୁ ନିରାଶ କରନ୍ତି ନାହିଁ । ସେ ଲଲୋକୁ କଥା ଦେଇଥିଲା ଯେ ଯଦି ତା' ଘରେ ଝିଅ ଜନ୍ମ ହୁଏ ତା'ହେଲେ ତା'କୁ କୈମା ସହିତ ବାହା ଦେବ । କୈମାର ପିତା କିଂବା ଗୋଂଦଲାର ପତି ପାଇଁ ଏଥିରେ ଆପତ୍ତି କରିବାର କୌଣସି କାରଣ ନଥିଲା ।

ତା କଥାକୁ କେହିହେଲେ ଆପତ୍ତି କରି ନଥାଂତେ; କିଂତୁ ଗୋଂଦଲା ନିଜ ସ୍ୱାମୀର ବିପରୀତ ସ୍ୱଭାବ ସହିତ ପରିଚିତ ଥିଲା । ତାକୁ ଯେଉଁ ବାଟରେ ଯିବାକୁ କହିଲେ, ସେ ଠିକ୍ ତା'ର ଓଲଟା ବାଟରେ ଚାଲୁଥିଲା । କେ ଜାଣେ ବିପରୀତ ଦିଗରେ ଚାଲିବା ଦ୍ୱାରା ସେ କେଉଁ ସୁଖ ପାଉଥିଲା ? ଏଇ କାରଣରୁ ଗୋଂଦଲା ନିଜ କଥା ନିଜ ପେଟ ଭିତରେ ଲୁଚାଇ ରଖିଥିଲା ଓ ସୁଯୋଗ ଦେଖି ସେଇ କଥା କହିବା ପାଇଁ ଚାହୁଁଥିଲା । ଦରିସ୍ତା କେବେ ମନାକରିବ ଗୋଂଦଲା ତା'ପାଇଁ ଅପେକ୍ଷା କରିବାକୁ ଲାଗିଲା । ଦରିସ୍ତା 'ନା' କହିବା ପରେ ସେ ସହଜରେ ସମସ୍ତଂକୁ ନିଜ ପ୍ରସ୍ତାବରେ ରାଜି କରାଇପାରିଥାଆନ୍ତା ।

କିଂତୁ ରାତି ପହଂଚିବା ଆଗରୁ ଦରିସ୍ତା ନିଜେ ମୁଗଲାନାରେ ପହଂଚିଗଲା । ମଲକା ପାଇଁ କ'ଣ ପାତ୍ରର ଅଭାବ ଥିଲା ? ସେ ନିଜର କର୍ତ୍ତବ୍ୟ ସଂପନ୍ନ କରିବା ପାଇଁ ଖୁବ୍ ଆଗ୍ରହୀ ଜଣାପଡୁଥିଲା । ଦରିସ୍ତା ଆସି ଘରେ ପହଂଚିବାକ୍ଷଣି ପୁରୁଷ ଲୋକମାନେ ଖୁସି ହୋଇଉଠିଲେ ଓ ସ୍ତ୍ରୀ ଲୋକମାନଂକ ମନ ଆଶଂକାରେ ଭରିଗଲା । କେଜାଣି ଏବେ କ'ଣ ହେବ ? ରୋଷେଇ କଲାବେଳେ ଗୋଂଦଲା କାନ ଡେରି ପୁରୁଷମାନଂକର କଥାବାର୍ତ୍ତା ଶୁଣୁଥାଏ ଓ ମଲକା କାଂଥକୁ ଆଉଜି ବସିଥାଏ ।

ଦରିସ୍ତା ରାସ୍ତ ମୁବାରକକୁ କ'ଣ କହିଲା କେଜାଣି ଘରସାରା ଚୁପ୍ ହୋଇ ରହିଗଲେ । ସାପ କାମୁଡ଼ିଲା ପରି ଘରେ ନିସ୍ତବ୍ଧତା ଖେଳିଗଲା । ଆଖପାଖରେ ବାତାବରଣରୁ ସ୍ପଷ୍ଟ ବାରିହେଉଥିଲା ଯେ ଦରିସ୍ତାର ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ଦିଆଯାଇଛି । ଏଇ କଥାର ଆଭାସ ଗୋଂଦଲା ଓ ମଲକାକୁ ମିଳିଯାଇଥିଲା । ପ୍ରସ୍ତାବ କଣ ଥିଲା ସେକଥା ପୁରୁଷମାନଂକ ବ୍ୟତୀତ ଆଉ କାହାକୁ ଜଣା ନଥିଲା । ଦରିସ୍ତା ଏମିତି କାହିଁକି ହୋଇଯାଇଛି, ଏ କଥା ଚିଂତା କରି ପୁରୁଷମାନେ ଦୁଃଖିତ ଥିଲେ । "ଆଚ୍ଛା, ଚିଂତା କରିବା", ଏହା କହି ମୁଖିଆ କଥା ବୁଲାଇଦେଲା । ସେମାନେ ବାଳିବାଙ୍କ ବିଷୟରେ କଥାଭାଷା ହେଉ ହେଉ ଶୋଇପଡ଼ିଲେ ।

ସମସ୍ତେ ଶୋଇଥିଲେ ମଧ୍ୟ ପ୍ରକୃତରେ କାହାରି ଆଖିରେ ନିଦ ନଥିଲା । ଦରିସ୍ତା ଏଥିପାଇଁ ଦୁଃଖିତ ଥିଲା ଯେ ତା' ଭାଇ ତା' କଥାକୁ ମାନି ନଥିଲା ଓ ତା' ଭାଇର ଦୁଃଖ ହେଉଥିଲା ଯେ ଦରିସ୍ତା ତାକୁ କେଉଁ ଧରଣର ପ୍ରସ୍ତାବ ସ୍ୱୀକାର କରିବାପାଇଁ କହୁଥିଲା । ପୁତୁରାମାନେ ମଧ୍ୟ ବାପର ପକ୍ଷ ନେଇଥିଲେ ।

ଏ ପଟେ ଗୋଂଦଲା ଓ ମଲକା ବାରଂଡ଼ାରେ ଶୋଇ ପରସ୍ପରର ହୃଦୟର ସ୍ପଂଦନ

ଶୁଣୁଥିଲେ । ମା' ଝିଅଂକର ଆଉ ସଂଦେହ ନଥିଲା ଯେ ଦଉସ୍ଥାର କଥାକୁ କେହି ମାନିନାହାଁନ୍ତି । କିଂତୁ ଦଉସ୍ଥାର ପ୍ରସ୍ତାବ କଣ ଥିଲା ଓ ତାକୁ ଅସ୍ୱୀକାର କରିବାର ଫଳ କଣ ହେବ, ଏହା ସେମାନେ ଜାଣିପାରୁନଥିଲେ ।

ଗୋଂଦଲର ମନେହେଉଥିଲା ଯେ ତା'ର ଦୃଷ୍ଟିରୁ ଯାହା ହୋଇଛି ଭଲ ହୋଇଛି । କିଂତୁ ଯେ ପର୍ଯ୍ୟଂତ କଥାଟା କଣ, ଠିକ୍ ଭାବରେ ଜଣା ନପଡ଼ିଛି ସେଯାଏ ତା'ର ଅଖାଡ଼ୁଆ ପତି ଓ ତା'ଠୁ ବଳି ଅଖାଡ଼ୁଆ ପୁଅମାନଂକୁ ଅବା କି ବିଶ୍ୱାସ ? ଗୋଂଦଲ ମଲକୀର ମନଭିତରେ କୈମାର ଯେଉଁ ପ୍ରତିକୃତି ଅଂକନ କରିଥିଲା, ତାକୁ ଲିଭାଇଦେବା ପାଇଁ ମଲକୀ ପାଖରେ ଶକ୍ତି ନଥିଲା । ଝିଅମାନେ ପ୍ରବଳ ପରାକ୍ରମୀ ଭାଇ ପସଂଦ କଲେ ମଧ୍ୟ ସେମାନେ ଶାଂତଶିଷ୍ଟ ସ୍ୱଭାବର ପତି କାମନା କରଂତି । ସେ କୈମା ପାଖରେ ଶାଂତିରେ ରହିବ, ପ୍ରେମର ଦୋଳି ଝୁଲିବ—ମଲକୀ କଳ୍ପନା କରୁଥିଲା । ସଂପର୍କରେ କୈମା ବାନ୍ଥାର ପୁତୁରା ଥିଲା । ବାନ୍ଥା କଥା ଗଲାକାଲିର କଥା ଭଳି ତଟକା ଥିଲା । ବାନ୍ଥାର ପୁତୁରା ହୋଇଥିବା ହେତୁ କୈମାର ନାମ ସହିତ ପ୍ରେମର ଇତିହାସ ଆପେ ଆପେ ଯୋଡ଼ି ହୋଇ ଯାଇଥିଲା ।

କୈମାର ଐତିହାସିକ ଅତୀତର ଚିତ୍ର ମଲକୀର ଯୁବତୀ ଆତ୍ମାକୁ ଅଧିକାର କରିସାରିଥିଲା । କିଏ ଜଣେ ଯେମିତି ତାକୁ ମଂତ୍ର କରିଦେଇଥିଲା । ଯେଉଁଠି ବାନ୍ଥା ବଡ଼ ହୋଇ ଯୁବକ ହୋଇଥିଲା, ସେଇ ବଣ ଓ ସବୁଜ ପ୍ରାନ୍ତରକୁ ସେ ସ୍ୱପ୍ନରେ ଦେଖିସାରିଥିଲା । କୈମା ବାନ୍ଥା ଭଳି ରୂପବାନ୍ ନଥିଲେ ମଧ୍ୟ ବାନ୍ଥାଠାରୁ ଊଣା ହେବା କଥା ନୁହେଁ । ମାଆ ଏହା ମଧ୍ୟ କହିଥିଲା ଯେ କୈମା ଶାଂତ ସ୍ୱଭାବର ଥିଲା ଓ ତା'ର ସଂକଳ୍ପ ଦୃଢ଼ ଥିଲା ।

ତଖ୍ତ ହଜାରାରେ ବାହା କରିବା ଦ୍ୱାରା ଗୋଂଦଲ ଅନେକଗୁଡ଼ିଏ ଲାଭ ଦେଖି-ପାରୁଥିଲା । ଲଲେ ଥିଲା ତା'ର ଭଉଣୀ—ନିଜର ହାତ । ମଲକୀ ତାର ଯେମିତି ଝିଅ ଥିଲା ସେମିତି ଲଲେର ମଧ୍ୟ ଝିଅ ଥିଲା । କୈମା ଯେମିତି ଲଲୋର ପୁଅ ଥିଲା, ସେମିତି ଗୋଦଂଲର ମଧ୍ୟ ପୁଅ ଥିଲା । ରକ୍ତ ଯାହା ହେଲେ ବି ରକ୍ତ—ପାଣିଠାରୁ ଭିନ୍ନ ।

ହେଲେ ଦଉସ୍ଥା ରକ୍ତକୁ ପାଣି ଓ ପାଣିକୁ ରକ୍ତ କରିବା ପାଇଁ ଉଦ୍ୟତ ଥିଲା । ସକାଳ ହେବା ଆଗରୁ ପରିବାରର ସମସ୍ତେ ଏକଥା ଜାଣିସାରିଥିଲେ ।

ଜଣାପଡ଼ିଲା ଯେ ଦଉସ୍ଥା ନିଜର ଭାଇର ଝିଅକୁ ସମ୍ରାଟ୍ ଆକବର ସହିତ ବାହାଦେବା ପାଇଁ ଚାହୁଁଛି । ବୃଦ୍ଧ ସମ୍ରାଟ୍ ମଲକୀର ରୂପ ଓ ଯୌବନ ପ୍ରତି ଆସକ୍ତ ହୋଇ ଦଉସ୍ଥାକୁ ଉଚ୍ଚ ପ୍ରତିଷ୍ଠା ଓ ମର୍ଯ୍ୟାଦା ଦେଇପାରେ । ସେମାନେ ରାଜପୁତ୍ ହେଲେ ମଧ୍ୟ ଆକବର ନିଜର ସଂପର୍କୀୟମାନଂକୁ କୌଣସି କଷ୍ଟ ଅନୁଭବ କରିବା ପାଇଁ ଦେବେନାହିଁ । ଦଉସ୍ଥା ସୁବେଦାରଠାରୁ ଜେନେରାଲ୍ ହୋଇଯାଇ ପାରିବ । ଆକବର ସହିତ ତା'ର ସଂପର୍କ ପ୍ରତିଷ୍ଠା ହେବାର ଥିଲା । କିଏ କ'ଣ ନିଜର ସଂପର୍କୀୟମାନଂକୁ ନିଜଠାରୁ ଊଣା ଦେଖିପାରେ ? ଦଉସ୍ଥା ଆଖିରେ ଜେନେରାଲ ହେବାର ସ୍ୱପ୍ନ ବସାବାନ୍ଧିଥିଲା । ସମ୍ରାଟ୍

ଏସବୁ କିଛି ଜାଣିନଥିଲେ ମଧ୍ୟ ଦରିଆ ଆକବରଙ୍କ ଦୁର୍ବଳତା ସହିତ ପରିଚିତ ଥିଲା । ଥରେ ମାତ୍ର ଭାଇକୁ ରାଜି କରାଇବା ଯାହା ବିଳମ୍ବ; ତା'ପରେ ଦରିଆ ପାଇଁ ରାଜଦରବାରର ସମସ୍ତ ଦ୍ୱାର ଉନ୍ମୁକ୍ତ ହୋଇଯିବ । ଏଇ ଗତକାଲିର କଥା, ଆକବର ସଲିମ୍‌ର ପ୍ରେମିକା ଅନାରକଲିକୁ ହତ୍ୟା କରାଇଦେଲେ; କାରଣ ସେ ସମ୍ରାଟଙ୍କ ଆଦେଶକୁ ଅଗ୍ରାହ୍ୟ କରିଦେଇଥିଲା । ଦରିଆ ଭଲଭାବରେ ଜାଣିଥିଲା ଓ ତାର ବିଶ୍ୱାସ ଥିଲା ଯେ ତା'ର ଝିଆରୀ କୌଣସି ଅନାରକଲିଠାରୁ କମ୍ ନୁହେଁ ।

ଦରିଆର ମନକଥା ମୁଗଲାନୀ ପରିବାରର ସମସ୍ତେ ବୁଝିପାରିଥିଲେ । ସକାଳ ହେଉ ହେଉ ଏଇ ବିଷ ଘରସାରା ସଂକ୍ରମିତ ହୋଇଯାଇଥିଲା । ମା'ଝିଅଙ୍କ ଉପରେ ଏଇ ବିଷର ପ୍ରଭାବ ପଡ଼ିଲାକ୍ଷଣି ସେମାନେ ମଧ୍ୟ ବିଷ ଉଦ୍‌ଗିରଣ କରିବାକୁ ଲାଗିଲେ । ଗୋଂଦଲର ହାତରେ ଲାଳନପାଳନ ହୋଇ ବଡ ହୋଇଥିବା ଦରିଆ ଆଜି ନିଜ ଝିଆରୀକୁ କେଉଁ ବାଟରେ ଚଲାଇବା ପାଇଁ ଚାହୁଁଛି ! କାଲିଯାଏ ବଡଭାଉଜଠାରୁ ମାଗି ମାଗି ଖାଉଥିବା ଲୋକ ଆଜି ରାଜଦରବାରରେ ନିଜର ପ୍ରଭାବ ଅଛି ବୋଲି କେତେ ଗର୍ବ କରୁଛି !

ତା' ପରଦିନ ସକାଳେ ଦରିଆ ଦିଲ୍ଲୀ ଯିବାପାଇଁ ବାହାରିଲା ସମୟରେ କେହିହେଲେ ତାକୁ ବିଦାଇଦେବା ପାଇଁ ଗଲେନାହିଁ । ବୃଦ୍ଧ ମୁବାରକ ନିଜଠାରୁ ଉଚ୍ଚ ବଂଶ ପସଂଦ କରୁନଥିଲା । ବଡ଼ଘରର ଲୋକେ ଝିଅକୁ ଧନସଂପତ୍ତିର ବଡ଼ିମା ଦେଖାଂତି । ତା' ମତରେ ନିଜ ଭଳି ଖାଇପିଇ ଚଳିଯାଉଥିବା ଜମିଦାର ଯଥେଷ୍ଟ ଥିଲା । ଆଉ ମଧ୍ୟ ଅତି ସ୍ନେହଶ୍ରଦ୍ଧାରେ ପାଳନ କରିଥିବା ଝିଅକୁ ଏତେ ଦୂରକୁ କେମିତି ପଠାଇଦେବ ? ପାଞ୍ଚଶହ କୋଶ ଦୂରରେ ଥିବା ଝିଅ ଯାହା, ମଲା ଝିଅ ତାହା । ଯେଉଁ ପୁଅ ଝିଅ ବେଳ-ଅବେଳରେ ସୁଖଦୁଃଖକୁ ଭାଗୀ ନହେଲେ, ତା'ହେଲେ ସେଭଳି ପୁଅଝିଅ ଥାଇ ଲାଭ କ'ଣ ?

କିଂତୁ ଦରିଆ ତ କେବଳ ନିଜ ସୁଖର ସଂଧାନରେ ମାତିଥିଲା । ବୃଦ୍ଧ ମୁବାରକ 'ନା' କହିବା ଫଳରେ ତା'ର ସମସ୍ତ ଉଚ୍ଚାଭିଳାଷ ପାଣିରେ ମିଳେଇଯାଇଥିଲା । ଦରିଆର ମନେହେଲା ଯେ ଜେନେରାଲ ହେବା ତ ଦୂରର କଥା, ହାତରେ ଥିବା ସୁବେଦାରୀ ଖଂଡ଼ିକ ମଧ୍ୟ ତା' ପାଖରୁ ଛଡ଼ାଇ ନିଆଯାଇଛି । ଉନ୍ନତିର ପାହାଚ ଚଢ଼ୁଥିଲାବେଳେ କେହି ଜଣେ ଯେମିତି ତା'ର ହାତ ଟାଣି ତଳକୁ ଘୋଷାଡ଼ି ନେଇଥିଲା । ସେ ତଳେ ଠିଆହୋଇ କ୍ରୋଧରେ ଥରଉଠୁଥିଲା । ସେ ମନେ ମନେ ନିଷ୍ପତ୍ତି କଲା ଯେ ଏହାର ପ୍ରତିଶୋଧ ନ ନେବାଯାଏ ସେ ଶାଂତିରେ ନିଃଶ୍ୱାସ ନେଇ ପାରିବ ନାହିଁ ।

ଘର ଭିତରେ ବିଭେଦ ସୃଷ୍ଟି ହୋଇଥିଲା । ମଲକାର ଚଳଚପଳ ମନ ଚିଂତାମଗ୍ନ ହୋଇଉଠିଲା । ଜମିଦାର ପରିବାରରେ ଭାଇ ଭାଇ ଯେତେବେଳେ ଲଢ଼ୁଥିଲେ, ଜଣେ କାହାର ମୁଂଡ ନ କାଟିନେବାଯାଏ ଶାଂତି ପାଉନଥିଲେ । ଭାଇ ଭଗାରିଠାରୁ ବଳି

ବିଭେଦ ଆଉ କେଉଁଠି ନାହିଁ । ଉଭୟେ ଉଭୟଙ୍କର ସବୁ ଭିତର କଥା ଜାଣିଥାଆନ୍ତି । ଗୃହଭେଦ ହିଁ ଲଙ୍କା-ଧ୍ୱଂସର କାରଣ ।

ଏବେ ଦୋଳି ଝୁଲିବା ପାଇଁ ଗଲେ ମଲକୀକୁ ଆଉ ଦୋଳି ଉପରେ ଗୋଡ଼ ଦେବା ପାଇଁ ଇଚ୍ଛା ହେଉନଥିଲା । କୌଣସି ପ୍ରକାରେ ମନକୁ ଆୟତ୍ତ କରି ଦୋଳି ଉପରେ ଚଢ଼ିଗଲେ ମଧ୍ୟ ଦୁଇ-ତିନି ଥର ଝୁଲିଲା ପରେ ସେ ଅନ୍ୟମନସ୍କା ହୋଇପଡ଼ୁଥିଲା । ପାଖରେ ଥିବା ସଖୀମାନେ ଟିକିଏ ବେଶୀ ଉଚ୍ଚକୁ ଦୋଳି ଝୁଲାଇଦେଲେ ଭୟରେ ତା'ର ଛାତି ଧକ୍‌ଧକ୍ ହେଉଥିଲା । ଗଛର ଡେରକୁ ମଧ୍ୟ ଦୋହଲାଇ ଦେଉଥିବା ମଲକୀ ଏବେ ପତ୍ର ଦେଖିଲେ ଡରିଯାଉଥିଲା । ସରକାରୀ କାରସାଦ ତା'ର ବାପମାଆଙ୍କୁ କଠୋର ଦଣ୍ଡ ଦେଇ ନପାରେ । କୈମା ତଖତ ହଜାରାରେ ଆରାମରେ ଥାଏ; କିନ୍ତୁ ଏଣେ ମଲକୀ ଯେ ଚିନ୍ତାରେ ପାଗଳୀ ହୋଇଯାଇଥାଏ । ଦୋଳି ବନ୍ଧାହୋଇଥିବା ଅଶ୍ୱତ୍ଥ ଗଛ ଓ ଘରର ଛାତ ଯେମିତି ତା' ଉପରକୁ ମାଡ଼ିବସୁଥାଏ । ଯଦି ତା'ର ମନ ଖୁସି ପାଇବା ପାଇଁ ଇଚ୍ଛା ନକରେ ତା'ହେଲେ ଦେହକୁ ନେଇ ସେ କଣ ଅବା କରନ୍ତା ?

ଏଇ କଥାର ସୁଯୋଗ ନେଇ ଗୋନ୍ଦଲି ମଲକୀର ବିବାହ କୈମା ସହିତ କରିବା ପାଇଁ ରାସ୍ତ ମୁବାରକ ଆଗରେ ପ୍ରସ୍ତାବ ବାଢ଼ିଲା । ତଖତ ହଜାରାର ଦୁଲିଚ୍ଚ ତା ସହିତ ସମ୍ପର୍କ ଜମିଦାର ଥିଲା । ଶରୀରର ସମୃଦ୍ଧ ହେବାପାଇଁ ଏକପ୍ରକାରର ଦାବୀ ଥିଲା । ରାସ୍ତ ମୁବାରକର ଶାଳୀ ଲକେ ମଧ୍ୟ ଅତ୍ୟନ୍ତ ଶାନ୍ତ ପ୍ରକୃତିର ଥିଲା । ଖୁବ୍ କମ୍ ଯିବା-ଆସିବା କରୁଥିଲେ ମଧ୍ୟ ତଖତ ହଜାରାର ଲୋକମାନଙ୍କର ଆଗ୍ରହ-ବ୍ୟବହାର ରାସ୍ତ ମୁବାରକକୁ ପ୍ରଭାବାନ୍ୱିତ-କରିଥିଲା । ଯେତେବେଳେ ମଧ୍ୟ ସେମାନେ ଏକାଠି ଶିକାର କରିବା ପାଇଁ ଯାଉଥିଲେ, ପରସ୍ପର ମଧ୍ୟରେ ଖୁବ୍ ଘନିଷ୍ଠତା ରହୁଆସିଥିଲା । ମଣିଷ ଅତି ଅଳ୍ପ ସମୟ ଭିତରେ ଚିହ୍ନା-ପଡ଼ିଯାଏ । ରାସ୍ତ ମୁବାରକର ଏଇ ସମ୍ପର୍କ କଥା ମନେ ନଥିଲା । ଯଦି ତା'ର ସାମାନ୍ୟ ମନେଥାଆନ୍ତା, ତା'ହେଲେ ସେ କେବେହେଲେ ଦରିୟାର ସାହାଯ୍ୟ ଲୋଡ଼ି ନଥାନ୍ତା । ଏବେ ତାକୁ ତା' ନିଜ ଉପରେ କ୍ରୋଧ ହେଉଥିଲା । ଗୋନ୍ଦଲି ମଧ୍ୟ ଅନୁତାପ କରୁଥିଲା ଯେ ସେ କାହିଁକି ଆଗରୁ ଏ କଥା ଉଠେଇ ନଥିଲା । ରାସ୍ତ ମୁବାରକର ଭୟରେ ସେ ଏବେ ମଧ୍ୟ ଭଉଣୀ ଆଗରେ ଅନେକ ଆଗରୁ କରିଥିବା ଶପଥ ବିଷୟ କାହାକୁ କହିନଥିଲା ।

କୈମା ସାଥିରେ ବିବାହ ପ୍ରସ୍ତାବ ଉଠିବାପରେ ଘରେ ସମସ୍ତେ ଆନନ୍ଦିତ ଥିଲେ । ଉଭୟ ପରିବାରର ଅନେକ ସାମଞ୍ଜସ୍ୟ ଥିଲା ଓ ଦୁହେଁ ଏକାଧରଣର ଥିଲେ । ଅବିଶ୍ୱାସର ଉତ୍ତପ୍ତ ଲୁ' ପରିବର୍ତ୍ତେ ବିଶ୍ୱାସର ଶୀତଳ ସମୀରଣ ବହିବାକୁ ଲାଗିଲା ।

ମଲକୀର ମନଭିତରେ ଦାନକୁଦାନ କୈମାର ରୂପ ଜୀବନ୍ତ ହୋଇଉଠୁଥିଲା । କୈମା ତା' ହୃଦୟକୁ ଯେତେ ବେଶୀ ଅଧିକାର କରୁଥିଲା, ମଲକୀ ଆକବର ଉପରେ ସେତିକି କ୍ରୋଧାନ୍ୱିତ ହୋଇଉଠୁଥିଲା । ଦରିୟା ନିଜ ଇଚ୍ଛାରେ ପ୍ରସ୍ତାବ ପାଇଲେ ସୁଦ୍ଧା ବୃଦ୍ଧ ସମ୍ରାଟ୍ ସହିତ ତା'ର ନାମ ମୁହୂର୍ତ୍ତିକ ପାଇଁ ମଧ୍ୟ ଯୋଡ଼ାଯାଉ, ମଲକୀ ଏକଥାକୁ ଘୃଣା କରୁଥିଲା ।

ତା'ର ବାଦଶାହ ସହିତ ଓ ବାଦଶାହର ତା ସହିତ ସମ୍ପର୍କ କ'ଣ ! ଦୁଇଟି ଚିତ୍ର ତା' ଆଖି ଆଗରେ ଭାସିଉଠୁଥିଲା—ରୂପର ଦେବତା କୈମା ଓ ବୃଦ୍ଧ ଆକବର ।

କୈମା ସହିତ ସମ୍ବନ୍ଧ ହେଲା ପରେ ମଲକାର ରୂପର ଖ୍ୟାତି ତଖତ ହଜାରାରେ ବ୍ୟାପିଗଲା । ଗଡ଼ ମୁଗଲାନାର ରୂପସୀକୁ ପାଇବାର ଆକାଂକ୍ଷା କୈମାର ମନଭିତରେ ଧନକୁଧନ ବଢ଼ୁଥିଲା । କୈମା ଓ ତା'ର ପରିବାରର ଲୋକେ ମିର୍ଜ୍ଜା ମୁବାରକ କେଉଁ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି କେଉଁ ସ୍ଥାନରେ ସମ୍ପର୍କ ଯୋଡ଼ୁଥିଲା, ସେକଥା ଜାଣିପାରିଥିଲେ । ବାଦଶାହ ଆକବର ସାଥିରେ ନିଜର ତୁଳନା କରାଇଥିବାରୁ କୈମା ଖୁସିରେ ଫୁଲି-ଉଠୁଥିଲା । ହେଲେ ବାହା ନହେଲା ପର୍ଯ୍ୟନ୍ତ ତା' ମନରେ ଶାନ୍ତି ନଥିଲା । ବିବାହ ପୂର୍ବରୁ ମଲକାର ପିତାମାତାଙ୍କର ଇଚ୍ଛାଉପରେ ସବୁକଥା ନିର୍ଭର କରୁଥିଲା । ତାଙ୍କର ଇଚ୍ଛା ଦଲାଖ୍ୟାର ଆକାଂକ୍ଷାକୁ ବାଧା ଦେଉଥିଲା । ଦଲାଖ୍ୟାର ଆକାଂକ୍ଷା ସାଧାରଣ ଆକାଂକ୍ଷା ନଥିଲା—ପରୋକ୍ଷରେ ତା' ସହିତ ଆକବରଙ୍କ ପ୍ରଭାବ ଓ ସରକାରୀ କୃପା ମଧ୍ୟ ମିଶିରହିଥିଲା । କୈମାର ହୃଦୟ ମଲକାକୁ ପାଖରେ ପାଇବା ପାଇଁ ଆକୁଳ ଥିଲା; କିନ୍ତୁ ସାମାଜିକ ରୀତିନୀତିକୁ ଏଡ଼ାଇଦେବାଭଳି ସାହସ ତା'ର ନଥିଲା ।

ମଲକା ପାଖକୁ ଉଡ଼ିଯିବା ମଧ୍ୟ କ'ଣ ସହଜ କଥା ଥିଲା ? ଦୁଇ ଗାଆଁ ମଝିରେ ଥିଲା ଦୁଇଟି ନଦୀର ବ୍ୟବଧାନ । ତଖତ ହଜାରା ଝେଲମକୂଳରେ ଥିଲା ଓ ଗଡ଼ ମୁଗଲାନା ସିନ୍ଧୁ ନଦୀକୂଳରେ ଅବସ୍ଥିତ ଥିଲା ।

ଦୁହିଁଙ୍କର ମାଆ-ବାପାଙ୍କର ଦଲାଖ୍ୟା ଉପରେ ଆସ୍ଥା ନଥିଲା । ଉଭୟ ପକ୍ଷ ବାହାଘର ବେଶୀ ଦିନ ଗଡ଼େଇବାପାଇଁ ପକ୍ଷପାତୀ ନ ଥିଲେ । ଦୁଲାରୀ ଓ ମିର୍ଜ୍ଜା ମୁବାରକର ପରସ୍ପର ପାଖକୁ ଯିବାଆସିବା ବଢ଼ିଯାଇଥିଲା । ଏବେ ସେମାନେ ଏକାଠି ହୋଇ ଶିକାରରେ ଯିବାପାଇଁ ସ୍ୱପ୍ନ ଦେଖୁଥିଲେ । ଝେଲମଠାରୁ ସିନ୍ଧୁ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ ତାଙ୍କର ଅଧୀନକୁ ଆସିବାର ଥିଲା । ସେମାନେ ନିଜର ଇଚ୍ଛାନୁଯାୟୀ ଯେଉଁଠିକି ହେଲେ ଯାଇ ପାରିବେ । ଦୁଇଜଣଯାକଙ୍କୁ ଉଭୟ ନଦୀକୂଳରେ ବାସକରୁଥିବା ସିଂହ, ବାଘ, ହରିଣ, ତିତିର, ବଣକୁକୁଡ଼ା ଓ ଅନ୍ୟ ପଶୁପକ୍ଷୀ ନିଜର ସମ୍ପତ୍ତି ଭଳି ମନେହେଉଥିଲା । କଳ୍ପନା - ରାଜ୍ୟରେ ସେମାନେ ନିଜର ଶିକାରୀ କୁକୁରମାନଙ୍କୁ ହରିଣପଲ ପଛରେ ଗୋଡ଼ାଉଥିବାର ଦେଖୁଥିଲେ ।

ମିର୍ଜ୍ଜା ମୁବାରକ ବାହାଘରର ତିଥି ସ୍ଥିର କଲା ।

"ଯଦି ତୁମେ ମୋ କଥାକୁ ମାନିବ, ତା'ହେଲେ ଦଲାଖ୍ୟାକୁ ବାହାଘର ପାଇଁ ନଡାକିଲେ ଭଲ ହେବ ।" ଗୋନ୍ଦଲ ପରାମର୍ଶ ଦେଲା ।

"ଆରେ ! ଏମିତି କଣ କେବେ କେଉଁଠି ହେଲାଣି ? ଭାଇ, ଯାହାହେଲେ ବି ଭାଇ । ଦଲାଖ୍ୟା କିଛି ହେଲେ କହିବନି । କ୍ଷଣିକ ପାଇଁ ସେ ଲୋଭରେ ପଡ଼ିଯାଇଥିଲା ସିନା । ଏବେ ସେ କଥା ପୁରୁଣା ହୋଇଗଲାଣି ।" ମିର୍ଜ୍ଜା ମୁବାରକ ବୁଝାଇଦେଲା ।

“ଲୋଭୀ ଲୋକକୁ ବିଶ୍ୱାସ ନାହିଁ । ହେଲେ ତୁମର ଯାହା ଇଚ୍ଛା······” ଗୋବିନ୍ଦଲ୍ ନିଜର ସ୍ୱାମୀ ଉପରେ ନିର୍ଣ୍ଣୟର ଭାର ଛାଡ଼ିଦେଲା । ପୁଅମାନେ ମଧ୍ୟ ବାପକଥାରେ ହଁ ଭରିଲେ । କାହାର ଉପରେ ଜୋର୍ କରିବା ପାଇଁ ତାଙ୍କୁ ଭଲଲାଗିଲାନି । ଦଶିୟାକୁ ମଧ୍ୟ ସେମାନେ ଭୟ କରୁଥିଲେ । ନିମନ୍ତ୍ରଣ ପଠାଇଦିଆଗଲା ।

ବାହାଘର ପାଇଁ ଆୟୋଜନ ହେବାକୁ ଲାଗିଲା । ଏଆଡ଼େ ମଲକୀର ଘର ସଫାସୁତୁରା ହେଲା; ସେଆଡ଼େ କୈମା ଘରେ ମଧ୍ୟ । ଏଆଡ଼େ ଯୌତୁକର ବନ୍ଦୋବସ୍ତ ଚାଲିଥିଲା; ସେଆଡ଼େ ଶାଢ଼ୀ ଗହଣା ଠିକ୍ ହେଉଥାଏ । ଏପଟେ ଘୋଡ଼ାଶାଳକୁ ସଜାସଜି କରାଯାଉଥାଏ; ସେଆଡ଼େ ଘୋଡ଼ାମାନଙ୍କୁ ସଜ କରାଯାଉଥାଏ । ଏପଟେ ମଲକୀର ହୃଦୟର ସ୍ପନ୍ଦନ ବୃଦ୍ଧି ପାଉଥିଲା; ସେପଟେ କୈମାର ।

ବାହାଘର ଦିନ ଦଶିୟା ମଧ୍ୟ ଆସି ପହଂଚିଗଲା । ସେ ଖଚରମାନଙ୍କ ଉପରେ ଲଦି ଅଂଗୁରର ମଦ ଆଣିଥିଲା ! ତା’ ପାଖରେ ରାଜକୀୟ ବାଣ ଶ୍ରେଣି ଓ ରାଜକୀୟ ଗାଲିଚା ମଧ୍ୟ ଥିଲା । ତା’ ମୁହଁରୁ ବିତିଯାଇଥିବା ଘଟଣାର କିଛିହେଲେ ପ୍ରଭାବ ଜଣା ପଡ଼ୁନଥିଲା । ଝିଅର ଜୀବନ ପାଇଁ ସମସ୍ତେ ସମାନ ଭାବରେ ଦାୟୀ; ଏଣୁ ଯିଏ ଝିଅ ଆଗରେ ଦୋଷ କରେ ସେ ନର୍କରେ ପଡ଼ିଥାଏ ।

ବିବାହ ଦିନ ରାତିରେ ଗଡ଼ ମୁଗଲାନାର ମୁଖିଆ ଘରେ ମଦ ଉଚ୍ଛୁଳି ପଡ଼ୁଥାଏ । ବୟୋଜ୍ୟେଷ୍ଠ ବ୍ୟକ୍ତିମାନେ ବାହାର ଘରେ ବସି ମଦ ପିଉଥାଆନ୍ତି ଓ ଘରଭିତରେ ଝିଅମାନେ ନୂଆ ଜୋଇଁକୁ ଘେରି ଯାଇ ବସିଥାନ୍ତି । ଗୀତ-ବାଜଣା ଚାଲିଥାଏ । ଶାଶୂ ନିଜର ଜୋଇଁକୁ ଗୋଟାଳଡ଼ୁ ଖାଇବା ପାଇଁ ବାଧ୍ୟ କରୁଥାନ୍ତି । ଶାଳୀମାନେ ହସପରିହାସରେ ମାତିଥାନ୍ତି ।

ବିବାହ ସରିଯାଇଥିଲା । କୈମା ଓ ମଲକୀ ପରସ୍ପରର ହୋଇସାରିଥିଲେ । କାହାକୁ ଆଉ କୌଣସି କଥାର ଭୟ ନଥିଲା । ଦଶିୟା ଅଂଗୁରମଦ ଆଣିଥିବାରୁ ଉଭୟ ପକ୍ଷର ଆଖିରେ ସେ ଏକ ଗଣ୍ୟମାନ୍ୟ ବ୍ୟକ୍ତି ହୋଇଯାଇଥିଲା । ସେ ମଦ ଢାଳୁଥାଏ ଓ ବାକୀମାନେ ପିଇ-ଯାଉଥାଆନ୍ତି । ରାୟ ମୁବାରକର ବୈଠକଘରେ ବୋତଲରୁ ଠିପି ପରେ ଠିପି ଖୋଲୁଥାଏ । ଘର ଭିତରୁ ଲୋକନୃତ୍ୟର ସ୍ୱର ଭାସିଆସୁଥାଏ ।

କୈମା ଶାଳୀମାନଙ୍କ ପାଖରୁ ମୁକୁଳି ଆସି ବୈଠକଘରେ ପହଂଚିବାକ୍ଷଣି ଢକଢକ କରି ଗୁଡ଼ାଏ ମଦ ପିଇଗଲା । ବାହାଘରର ଉଦ୍‌ବିଗ୍ନତା ସହିତ ସେ କ୍ଲାନ୍ତ ମଧ୍ୟ ହୋଇ ପଡ଼ିଥିଲା । ଅବଗୁଣ୍ଠନ ଭିତରୁ ସେ ମୁହୂର୍ତ୍ତିକ ପାଇଁ ମଲକୀର ମୁହଁକୁ ଦେଖିପାରିଥିଲା । ତାହାର ନିଶା ମଧ୍ୟ କମ୍ ଲାଗିନଥିଲା । ଆସ୍ତେ ଆସ୍ତେ ଘରଲୋକ ଓ ବରଯାତ୍ରୀ ସମସ୍ତେ ମାତାଲ ହୋଇପଡ଼ିଲେ; କେବଳ ଦଶିୟାର ଜ୍ଞାନ ଥାଏ । ସେ ପ୍ରକୃତରେ ମଦ ପିଉ ନଥିଲା ଓ ପିଇଲେ ମଧ୍ୟ ଅଳ୍ପ ପିଇ ଅଧିକ ଫିଙ୍ଗି ଦେଉଥିଲା ।

ଦସ୍ତ୍ୟୁ ସୁଯୋଗ ଉଣ୍ଡ ରସ୍ତ ମୁବାରକ, ରହ୍ମନ, ମହରୁନ, ଦୁଲାର ଓ କୈମାକୁ ବନ୍ଦୀ କଲା । ସେ ସିପାହିମାନଙ୍କୁ ଗାଁ ବାହାରେ ବସାଇ ଦେଇ ଆସିଥିଲା । ତାର ଆଦେଶ ପାଇବା ମାତ୍ରେ ସିପାହିମାନେ ପାଂଚଜଣଯାକଙ୍କୁ ବାଂଧିନେଲେ । ନା ବନ୍ଦୀମାନଙ୍କର ହୋସ୍ ଥିଲା; ନା ଅନ୍ୟମାନଙ୍କର ।

ବିକେତା ଦସ୍ତ୍ୟୁ ଦିଲ୍ଲୀ ଅଭିମୁଖରେ ବାହାରିପଡ଼ିଲା ।

ପରଦିନ ପାହାନ୍ତାଂରେ ଯାଇ ଲୋକେ ବୁଝିପାରିଲେ ଯେ ବିଗତ ରାତିର ନାଚଗୀତ, ମଦଗିଲାସ ଓ ବାଣ ଶ୍ରେଣୀର କୋଳାହଳ ଭିତରେ ସବୁକିଛି ଆନଂଦ ହଜିଯାଇଛି । ଗାଁର ମୁଖିଆ ସାଥିରେ ବର, ବରପିତା ଓ ଭାଇମାନେ ମଧ୍ୟ ବନ୍ଦୀ ହୋଇଯାଇଛଂତି । କିଏ କୁଆଡ଼େ ଯିବେ, କିଛି ବୁଝିପାରୁନଥାଂତି । ଲୋକମାନଙ୍କୁ ନିୟଂତ୍ରଣ କରିବାପାଇଁ କେହି ନଥିଲେ । ସମ୍ରାଟଙ୍କର ଭୟ ଓ ରାଜଦରବାରର ଆତଂକ ସମସ୍ତଂକୁ ମାଡ଼ିବସିଥିଲା । ପ୍ରତ୍ୟେକ ସବୁକିଛି ଅପମାନ ସହିନେବା ପାଇଁ ପ୍ରସ୍ତୁତ ଥିଲେ । ଗଡ଼ ମୁଗଲାନାରେ ପ୍ରଥମ ଥର ପାଇଁ କେହି ଜଣେ ଏଭଳି ନିର୍ଲଜ୍ଜ ଭାବରେ ଅପମାନକୁ ସହ୍ୟ କରି ନେଇଥିଲା । ସହରଟାଯାକ ନୀରବ ଥିଲା । ତଖତ୍ ହଜାରର ବ ରୂ୍ରିଜଣ ବରଯାତ୍ରୀ ଅବା କଣ କରିପାରିଥାଆନ୍ତେ ? ଦସ୍ତ୍ୟୁ ସହିତ କେତେ ଜଣ ସୈନ୍ୟସାମଂତ ଅଛଂତି, କାହାରିକୁ ଜଣାନଥିଲା ।

ଗୋଂଦଲ ମୁଂଡର ବାଳକୁ ଟାଣିଓଟାର କାଂଦ-ବୋବାଳି ଛୁଡ଼ୁଥାଏ । ମଲକାର ଚିତ୍କାର ଶୁଣିବାପାଇଁ କେହି ନଥିଲେ ମଧ୍ୟ ଲୋକେ ନୀରବରେ ସବୁ ଦେଖୁଥାଆନ୍ତି । ଗଡ଼ ମୁଗଲାନା ସାରା ଓ ବରଯାତ୍ରୀମାନେ ମଧ୍ୟ କିଂକର୍ତ୍ତବ୍ୟବିମୂଢ଼ ହୋଇ ତାକୁ ଅନାଇ ରହିଥିଲେ ।

କୈମା ଚାଲିଯିବା ଆଗରୁ ମଲକା ଥରଟିଏ ପାଇଁ ମଧ୍ୟ ତା' ମୁହଁକୁ ଚାହିଁନଥିଲା । ସ୍ୱାମୀ ବଞ୍ଚି ଥାଉ ଥାଉ ସେ ବିଧବା ପାଲଟିଯାଇଥିଲା ।

ହେଲେ ମଲକାର ଇଚ୍ଛାଶକ୍ତି ପଥରର ଗାର ଭଳି ଥିଲା । ସେ କୈମାର ହୋଇ କୈମାଠାରୁ ତାକୁ ଛଡ଼ାଇ ନେଲାଭଳି ମାଆର ପୁଅ ଜନ୍ମ ହୋଇନଥିଲେ । ସେ ଦସ୍ତ୍ୟୁ କିଂବା ଦସ୍ତ୍ୟୁର ସମ୍ରାଟକୁ ଭ୍ରୂକ୍ଷେପ କରୁନଥିଲା । ଶାରୀରିକ ଶକ୍ତି ଯେଉଁ କାମ ପାଇଁ ଅକ୍ଷମ, ସେଇଠି ବୁଦ୍ଧିବଳରେ ଅସାଧ୍ୟ କାମ ମଧ୍ୟ ସାଧନ ହୋଇପାରେ । ସେ ସନ୍ନ୍ୟାସିନୀ ବେଶରେ କୈମାର ସଂଧାନରେ ବାହାରିପଡ଼ିଲା । ପ୍ରିୟତମକୁ ପାଇବାପାଇଁ ସେ ରାନ୍ଧିଭଳି ହାତରେ ଭିକ୍ଷାପାତ୍ର ଧରି ବାହାରିଲାବେଳକୁ ସେ ମାଆକୁ ମଧ୍ୟ କିଛି କହିନଥିଲା । ତା'ର ଭୟ ଥିଲା ଯେ କାଳେ ଘର ତ୍ୟାଗକଲା ସମୟରେ ମାଆ ତାକୁ ଏତେ ଦୁର୍ଗମ ପଥରେ ଯିବା ପାଇଁ ଦେବ ନାହିଁ । ତା'ର ନିଷ୍ପତ୍ତି ଅଟଳ ଥିଲା ।

ଦସ୍ତ୍ୟୁ ସାଥିରେ ଥିବା ସୈନ୍ୟସାମଂତ ସଂଖ୍ୟାରେ ଖୁବ୍ ଅଧିକ ଥିଲେ । ଶିକୁଳିରେ ବନ୍ଧା ହୋଇଥିଲେ ସୁଦ୍ଧା ପ୍ରତ୍ୟେକ ବନ୍ଦୀ ପାଖେ ପାଖେ ତିନିଜଣ ଲେଖାଏଁ ସିପାହି ଚାଲିଥାଂତି । ମଲକା ଏସବୁ ଖବର ଆଗରୁ ଆସୁଥିବା ଯାତ୍ରୀମାନଂକଠାରୁ ଜାଣିପାରୁଥାଏ । ମଲକାର ବାପ

ଓ ଭାଇମାନଙ୍କର ଦୁର୍ଦ୍ଦାନ୍ତ ସିଂହଭଳି ଚେହେରା ଓ କୈମାର ମନଲୋଭା ରୂପ ପ୍ରତ୍ୟେକ ଯାତ୍ରୀର ମନଭିତରେ ଲାଖିଯାଉଥିଲା । ସେମାନେ ଏପର୍ଯ୍ୟନ୍ତ ବଂଚିରହିଛନ୍ତି ବୋଲି ଜାଣିପାରି ମଲକୀ ଆଶ୍ୱସ୍ତ ଥିଲା । ଦୁଃଖ କ'ଣ ଅଛି—ଆଜି ଅଛି ତ କାଲି ପୁଣି ଚାଲି ଯାଇପାରେ ।

ଚାଲି ଚାଲି ମଲକୀର ପାଦରେ ଫୋଟକା ହୋଇ ସେଗୁଡ଼ିକ ଫାଟିଯାଇଥାଏ । ସେ ଶହ ଶହ କୋଶ ବାଟକୁ ଖାଲିପାଦରେ ଅତିକ୍ରମ କରିବା ପାଇଁ ସ୍ଥିର କରିଥିଲା । ତା'କୁ ବାରଂବାର ରାସ୍ତା ପଚାରିବା ପାଇଁ ପଡ଼ୁନଥିଲା । ବାଟସାରା ସ୍ଥାନ ସ୍ଥାନରେ ମାଇଲ ଖୁଂଟି, କିଛି କିଛି କୋଶ ଛାଡ଼ି କୂଅ ଓ ରାସ୍ତାର ଦୁଇ କଡ଼ରେ ଗଛମାନ ଥାଏ । କିଛି କିଛି ବ୍ୟବଧାନ ଅଂତରରେ ପାନ୍ଥଶାଳାମାନ ଥାଏ । ଯେଉଁଠି ଗଛ କମ୍ ଥାଏ, ସେଠି ତାତଲା ଭୂଇଁରେ ତା'ର ପାଦ ଜଳିଯାଉଥିଲା । ସେ ଧାଇଁଯାଇ ବାଲିକଡ଼ରେ ଥିବା ଘାସ ଉପରେ ଛିଡ଼ାହୋଇ ପଡ଼ୁଥିଲା । ପାଦର ଜ୍ୱାଳା ସାମାନ୍ୟ ଉପଶମ ହେଲେ ସେ ପୁଣି ଆଗକୁ ବଢ଼ୁଥିଲା । କେଉଁଠି ଖାଇବା ପାଇଁ ମିଳୁଥିଲା ତ କେଉଁଠି ମିଳୁନଥିଲା । ଗଭୀର ନିରାଶାର ଅଂଧକାର ଭିତରେ କୈମା ଯେ ବଂଚିରହିଥିଲା, ତାହା ଥିଲା ମଲକୀ ପାଇଁ ଆଶାର ଏକମାତ୍ର କାରଣ । ପ୍ରକୃତରେ ଦସ୍ୟୁମାନଙ୍କ ଉପରେ ଥିବା କ ବିଶ୍ୱାସ । କୋଉଠି ମାରିଦେଇ ତାଂକୁ ମାଟିତଳେ ପୋତିଦେଇଥାଆନ୍ତା । ସେ ବେଳେବେଳେ ଦସ୍ୟୁ ଓ ତା' ଦଳର ଅତି ନିକଟକୁ ଚାଲିଯାଉଥିଲା ଓ ପୁଣି ପଛକୁ ରହିଯାଉଥିଲା । ଥରେଅଧେ ସେ ଲୁଚି ଲୁଚି କୈମାକୁ ଦେଖିପାରିଥିଲା—ବିଚାରୀ ନିରୂପାୟ ଥିଲା । ମଲକୀର ବାପା ଓ ଭାଇଂକର ଅବସ୍ଥା ମଧ୍ୟ ଦୟନୀୟ ଥିଲା ।

ମଲକୀର ଯାତ୍ରା ହଜ୍‌ଠାରୁ ବଳି କଷ୍ଟଦାୟକ ଥିଲା । ହଜ୍‌ରେ ଗଲେ ସମସ୍ତଙ୍କ ମନର ଆଶା ପୂର୍ଣ୍ଣ ହେବାର ସଂଭାବନା ଥାଏ । ଏଇଠି ସେଇ ଜିନିଷ ମଧ୍ୟ ନଥିଲା ।

ଗନ୍ତବ୍ୟ ପଥ ଅତିକ୍ରମ କରି ଦସ୍ୟୁଦଳ କୁରୁକ୍ଷେତ୍ର ନିକଟରେ ଥିବା ଥାନେସରରେ ପହଂଚିଲେ । ମଲକୀ ମଧ୍ୟ ସେଇଠି ପହଂଚିଗଲା ।

ଥାନେସରରେ ମଲକୀର ଜଣେ ସନ୍ନ୍ୟାସିନୀ ସହିତ ପରିଚୟ ହେଲା । ମଲକୀ ସେଇ ସନ୍ନ୍ୟାସିନୀର ଆଶ୍ରମକୁ ଭିକ୍ଷା ଆଣିବା ପାଇଁ ଯାଇଥିଲା । କଥାଭାଷା ହେଉ ହେଉ ସନ୍ନ୍ୟାସିନୀ ମଲକୀର ଦୁଃଖ ଅନୁଭବ କରିପାରିଲା । ତା'ର ବେଦନାମୟ ଜୀବନର କାହାଣୀ ଶୁଣିବା ପରେ ସନ୍ନ୍ୟାସିନୀ ମଲକୀକୁ ସମ୍ରାଟ୍ ଆକବରଂକ ରାଜପୁତ ରାଣୀର ଝିଅ ଯମୁନା ସହିତ ସାକ୍ଷାତ କରିବା ପାଇଁ ପରାମର୍ଶ ଦେଲା । ସନ୍ନ୍ୟାସିନୀର ଦୃଢ଼ ବିଶ୍ୱାସ ଥିଲା ଯେ ଯଦି ରାଜକୁମାରୀ ଇଚ୍ଛାକରିବ ତା'ଦ୍ୱାରା ସବୁ କିଛି ଠିକ୍ ହୋଇଯିବ ।

ମଲକୀ ଯମୁନାର ମହଲକୁ ଭିକ୍ଷା ସଂଗ୍ରହ କରିବା ପାଇଁ ଗଲା । ତା'ର ରୂପ ଓ ଯୌବନ ଦେଖି ଯମୁନା ତା' ପ୍ରତି ଆକର୍ଷିତ ହୋଇପଡ଼ିଲା । ଏତେ ଯୁବାବୟସରେ ସନ୍ନ୍ୟାସିନୀ

ପାଲଟିଯାଇଥିବା ଏଇ ସୁଂଦରୀ ଝିଅଟି ପଛରେ ନିଶ୍ଚୟ କୌଣସି ଗୋପନ ରହସ୍ୟ ଲୁଚି-ରହିଥିଲା । ସେ ମଲକ୍ସାକୁ ମହଲ ଭିତରକୁ ଡକାଇ ଆଣିଲା । ଯମୁନା ପଚାରିବାରୁ ସେ କୈମା ସହିତ ନିଜର ବିବାହର କରୁଣ କାହାଣୀ ଶୁଣାଇଦେଲା । ଯମୁନା ଦେହରେ ତାକୁ ଏକ ଦେବୀର ରୂପ ଦେଖାଗଲା; ଏଣୁ ସେ ତା' ପାଖରେ ଏକଥା ମଧ୍ୟ ଲୁଚାଇଲାନି ଯେ ତା'ର କାକା ତାକୁ ସମ୍ରାଟ୍ ଅକବରଂକ ଅଂତପୁରରେ ରଖାଇ ପଦୋନ୍ନତିର ସ୍ୱପ୍ନ ଦେଖୁଛି ।

ଅଂତପୁରର କଥା ଶୁଣିବାକ୍ଷଣି ଯମୁନାର ଦେହ ଜଳିଉଠିଲା । କେହି ଜଣେ ମଲକ୍ସାକୁ ତା' ମାଆର ସଉତୁଣୀ କରିବା ପାଇଁ ଚେଷ୍ଟାକରୁଥିଲା । ସଉତୁଣୀର ଦୁଃଖ ଯମୁନା ଭୁଲିନଥିଲା । ନିଜ ପିତାର ବୃଦ୍ଧ ବୟସରେ ରସିକତା କଥା ମଧ୍ୟ ମନେଥିଲା । ସେ ବାଦଶାହୀ ଆଦେଶରେ ଅନାରକଲୀର ହତ୍ୟା ହେବା ଦେଖିଥିଲା । ତାକୁ ହତ୍ୟା କରିବାର ଏକମାତ୍ର କାରଣ ଥିଲା ଯେ ଅନାରକଲୀ ବୁଢ଼ା ବାପାକୁ ଛାଡ଼ି ଯୁବକ ପୁଅ ସଲିମ ପାଇଁ ପାଗଳୀ ହୋଇଥିଲା । ଯିଏ ଅନାରକଲୀକୁ ହତ୍ୟା କରାଇପାରେ, ସେ କ'ଣ ମଲକ୍ସାର ଅଂତପୁରକୁ ପ୍ରବେଶ କଲା ପରେ ଯମୁନାର ମାଆ ସହିତ ଭଲ ଆଚରଣ କରିବ ? ମଲକ୍ସାର କଥା ଶୁଣିବା ପରେ ତା'ର ମନେହେଲା ସତେ ଯେମିତି ତା'ର ମାଆ ସନ୍ନ୍ୟାସିନୀବେଶରେ ଭିକ ମାଗୁଛି ଓ ତା' ସ୍ଥାନରେ ମଲକ୍ସା ରାଜଦରବାରର ସର୍ବେସର୍ବା ପାଲଟିଯାଇଛି ! ମଲକ୍ସା ଯେ ଏମିତି କାମ କରିପାରେ, ଏକଥା ଯମୁନା ବିଶ୍ୱାସ ନକଲେ ମଧ୍ୟ ତାହା ମଲକ୍ସାର ଇଚ୍ଛା ଉପରେ ନିର୍ଭର କରୁନଥିଲା । ସ୍ୱୟଂ ବାଦଶାହ ଅକବରଂକ ହାତରେ ସବୁକିଛି ଥିଲା ।

ଗୋଟାଏ କଥା ଯୋଗୁଁ ରାଜକୁମାରୀ ବେଶୀ ଚିଂତିତ ନଥିଲା । କଥାଟି ହେଲା ଅକବରଙ୍କୁ ଏପର୍ଯ୍ୟଂତ ଦଶୀସ୍ୱାର ଅଭିସଂଧି ଜଣାନଥିଲା । ସେ ଏତିକ ମାତ୍ର ଜାଣିଥିଲେ ଯେ ଦଶୀସ୍ୱା ସୈନ୍ୟସାମଂତ ନେଇ ବିଦ୍ରୋହୀମାନଂକୁ ଦମନ କରିବା ପାଇଁ ଯାଇଛି । କିଂତୁ ଭଉଣୀର ସୁଂଦର ରୂପ ଯେ ସେମାନଂକ ବିଦ୍ରୋହୀ ହେବାର ଏକମାତ୍ର କାରଣ—ଏକଥା ସମ୍ରାଟ୍ ଅକବର ଜାଣିପାରିଥିଲେ ମଲକ୍ସାକୁ ମଧ୍ୟ ସାଂଗରେ ବଂଦୀ କରି ଆଣିବା ପାଇଁ ଆଦେଶ ଶୁଣାଇ ଦେଇଥାଆଂତେ । ଦଶୀସ୍ୱା ସମ୍ରାଟ୍ ଆଗରେ ମଲକ୍ସାକୁ ବଳି ଚଢ଼ାଇବା ପାଇଁ ବିଳଂବ କରିବାର କାରଣ ଥିଲା । ତା ହେଉଛି, ସେ ଭାବିଥିଲା ବିଦ୍ରୋହୀମାନଂକୁ ଦରବାରରେ ପହଁଚାଇ ଦେଇ ସେ ପ୍ରଥମେ ପୁରସ୍କାର ଲାଭ କରିବ ଓ ପୁଣି ଥରେ ମଲକ୍ସାକୁ ସମ୍ରାଟଂକର ଅଂତପୁରକୁ ଆଣିବାଦ୍ୱାରା ଦ୍ୱିତୀୟ ଥର ପାଇଁ ପ୍ରତିଷ୍ଠା ଲାଭ କରିବ । ରାଜକୁମାରୀ ଯମୁନା ଚାହୁଁ ନଥିଲା ଯେ ଏଭଳି ଦୁର୍ଦ୍ଦିନ ଆସୁ । ସେ ଦଶୀସ୍ୱାକୁ ଡକାଇଲା ଓ ନିର୍ଦ୍ଦୋଷ ବଂଦୀ-ମାନଂକୁ ମୁକ୍ତ କରି ମହଲକୁ ପଠାଇଦେବା ପାଇଁ ଆଜ୍ଞା ଦେଲା ।

ରାଜକୁମାରୀର ଆଦେଶ ଶୁଣିବା ପରେ ଦଶୀସ୍ୱା ନିଜର ଛାଉଣିକୁ ଚାଲିଗଲା । ବାଟରେ ତା'ର ମନେପଡ଼ିଲା ଯେ ବିଦ୍ରୋହୀମାନଂକ ସଂପର୍କରେ ରାଜକୁମାରୀଂକ ଆଦେଶ ମାନିବା

ପାଇଁ ସେ ବାଧ୍ୟ ନୁହେଁ । ସମ୍ରାଟ୍ ନିଜର ଝିଅକୁ ବୁଝାଇଦେବେ । ଦସ୍ୟୁ ସ୍ୱାଗତ ବନ୍ଦୀମାନଙ୍କୁ ନେଇ ଆଗକୁ ଚାଲିଯିବା ପାଇଁ ସ୍ଥିରକଲା ।

ରାଜକୁମାରୀ ଯମୁନା ଓ ମଲକାର ମିଳାମିଶା ଖୁବ୍ ଘନିଷ୍ଠ ହୋଇଯାଇଥିଲା । ରାଜକୁମାରୀ ମଲକାର ସନ୍ନ୍ୟାସିନୀ ବସ୍ତ୍ର କାଢ଼ିନେଇ ତାକୁ ରାଜକୀୟ ପରିଧେୟ ପିନ୍ଧାଇ ଦେଲା । ସେମାନେ ବାଦଶାହ ଆକବରଙ୍କ ଅଟଳ ନ୍ୟାୟ-ବ୍ୟବସ୍ଥା ବିଷୟରେ କଥାଭାଷା ହେଉଥିଲେ । ମଲକାର ଧ୍ୟାନ ସେଆଡ଼େ ନଥିଲା । ଏଇ ସବୁକଥା ଛାଡ଼ି ତା'ର ମନ କୈମା ନିକଟରେ ଥାଏ । ସକାଳୁ ସିପାହିମାନେ କୈମାକୁ ନେଇ ଆସିବା କଥା ।

ସକାଳୁ ଦରଜାରେ ପ୍ରହରୀର କରାଘାତ ଶୁଣି ମଲକା କୈମାକୁ ଦେଖିବା ପାଇଁ ଧାଇଁଗଲା । ହେଲେ କୈମା ସେଠାରେ ନଥିଲା । ପ୍ରହରୀ ଜଣାଇଦେଲା ଯେ ଦସ୍ୟୁ ସ୍ୱାଗତ କୈମା ଓ ତା'ର ଅନ୍ୟାନ୍ୟ ସାଥୀମାନଙ୍କୁ ଅନ୍ୟ କୌଣସି ସ୍ଥାନକୁ ନେଇଯାଉଛି । ଦରବାରର କର୍ମଚାରୀ ରାଜ ସୁବେଦାରର ଏତେ ସାହସ ? ରାଜକୁମାରୀ କ୍ରୋଧରେ ନିଜକୁ ନିୟନ୍ତ୍ରଣ କରି ପାରୁନଥିଲା । ପ୍ରହରୀ ଛିଡ଼ାହୋଇ ଭୟରେ ଥରହର ହେଉଥିଲା ।

ଯମୁନା ମଲକାକୁ ସାଥିରେ ନେଇ ଦିଲ୍ଲୀ ଯିବାପାଇଁ ବାହାରିଲା । ସେ ବାଟସାରା ଚିନ୍ତା କରୁଥାଏ ଯେ ବୃଦ୍ଧ ସମ୍ରାଟଙ୍କୁ ଏ ସବୁ ଘଟଣା କିଭଳି ଭାବରେ ଜଣାଇବା ଉଚିତ ।

ଦିଲ୍ଲୀରେ ମଲକାକୁ କିଛି କହିବା କିମ୍ବା ସମ୍ରାଟଙ୍କ ସମ୍ମୁଖକୁ ଯିବା ପାଇଁ ଅନୁମତି ନଥିଲା । ଏ ସବୁ କାମ ଥିଲା ଯମୁନାର ଓ ଏବେ ଏ କଥା ଉପରେ ଯମୁନାର ନିଜର ମର୍ଯ୍ୟାଦା ନିର୍ଭର କରୁଥିଲା ।

ସବା ପ୍ରଥମେ ରାଜକୁମାରୀ ନିଜ ମାଆ ସହିତ ସାକ୍ଷାତ କଲା । ଯେଉଁ ଝିଅ ଦିନେ ତା ମାଆର ସଉତୁଣୀ ହୋଇଥାଆନ୍ତା, ତା'କୁ ନେଇ ତା ମାଆକୁ ଦେଖାଇଲା । ସେ ଦସ୍ୟୁର କଥା ମଧ୍ୟ ମାଆକୁ ବୁଝାଇଲା । ରାଣୀ ଓ ରାଜକୁମାରୀ ଦୁହେଁ ମିଶି ସ୍ଥିର କଲେ ଯେ ସମ୍ରାଟଙ୍କୁ ମଲକା ସମ୍ପର୍କରେ କିଛି ନ ଜଣାଇ ସେମାନେ ଦସ୍ୟୁକୁ ଶେଷ କରିଦେବେ ।

ବୃଦ୍ଧା ମାଆର ହୃଦୟ ଦୁଃଖରେ ଦଳି ହୋଇଯାଉଥାଏ । ବାଦଶାହଙ୍କ ଉନ୍ମୁକ୍ତ ହୃଦୟ ଯୋଗୁଁ ତାକୁ ସୁଖ ଓ ଦୁଃଖ ଉଭୟ ଭୋଗ କରିବାକୁ ପଡ଼ୁଥିଲା । ସେ ବିଗତ ସମୟକୁ ଭୁଲି ନଥିଲା; ଯେଉଁ ସମୟରେ ସମ୍ରାଟ କୌଣସି ଯୁବତୀର ଯୌବନରେ ଆସକ୍ତ ହୋଇ ଜରୁରୀ କାମର ବାହାନାରେ ରାତି-ରାତିଧରି ମହଲକୁ ଫେରୁନଥିଲେ । ସେ ସମ୍ରାଟଙ୍କ ଜରୁରୀ କାମ କଣ, ତାହା ଭଲଭାବରେ ଜାଣିଥିଲା । ସେଇ ଜରୁରୀ କାମର ଆଳରେ ସମ୍ରାଟ ରାତିରାତି ବାହାରେ କଟାଇଦେଉଥିଲେ । ରାଣୀ ଭଲଭାବରେ ଜାଣିଥିଲେ ଯେ ସେ ଯେଉଁଦିନଠାରୁ ବୁଢ଼ୀ ହୋଇଯାଇଛନ୍ତି, ସେଇ ଦିନଠାରୁ ବାଦଶାହଙ୍କର କାମ କ୍ରମେ କ୍ରମେ ବଢ଼ିଯାଉଛି । ରାଣୀ ଏବେ ଆଉ ନିଜର ଦୁଃଖର ବୋଝକୁ ବଢ଼ାଇବା ପାଇଁ ଚାହୁଁ ନଥିଲେ । ତାଙ୍କର ଭାବୀ ସଉତୁଣୀ ଯାହାର ବୟସ ନିଜ ଝିଅଠାରୁ ମଧ୍ୟ କମ୍ ଥିଲା,

ସିଏ ତା' ସମ୍ମୁଖରେ ବସିଥିଲା । ଦସ୍ତାଗୀରର ଉପସ୍ଥିତ ରାଣୀଙ୍କୁ ବୟପ୍ରାପ୍ତ ମନେହେବାକୁ ଲାଗିଲା । ସେ ଦସ୍ତାଗୀରକୁ ମୂଳରୁ ଉତ୍ପାଟନ କରିବା ପାଇଁ ସ୍ଥିର କଲେ ।

ସମ୍ରାଟଙ୍କର ମହଲକୁ ପ୍ରବେଶ କରିବା ସମୟରେ ରାଣୀଙ୍କ ଆଦେଶରେ ସବୁଯାକ ଆଲୁଅ ଲିଭାଇ ଦିଆଗଲା । ବତ୍ତିମାନ ଭାଙ୍ଗିଦିଆଗଲା । ରାଣୀ ନିଜର ରୂପ-ଶୃଙ୍ଗାର କାଢ଼ି ଦେଇ ଫିଙ୍ଗି ଦେଇଥିଲେ । ସମ୍ରାଟଙ୍କ ଆସିଲାବେଳକୁ ସେ ମୁହଁମାଡ଼ି ବିଛଣାରେ ପଡ଼ିଥାଆନ୍ତି ।

ଏହା ଦେଖି ସମ୍ରାଟ୍ ବିଚଳିତ ହୋଇପଡ଼ିଲେ । ଆଜି ତ ସେ ରାଣୀଙ୍କ ଆପତ୍ତି କଲା ଭଳି କୌଣସି କାମ କରିନଥିଲେ; ଏକଥା ସେ ଜାଣିଥିଲେ । ଏମିତି ମଧ୍ୟ ବିବାହିତ ଜୀବନରେ ପ୍ରଥମଥର ପାଇଁ ତାଙ୍କର ଏଇ ରାଣୀ କୌଣସି କଥାକୁ ନେଇ ଏଭଳି କ୍ରୋଧ ପ୍ରଦର୍ଶନ କରିନଥିଲେ । ଆଜି ପର୍ଯ୍ୟନ୍ତ ସେ କେବେହେଲେ ନିଜର କ୍ରୋଧ ପ୍ରକାଶ କରିନଥିଲେ । ଆଜି ଏମିତି ଅବା କ'ଣ ଘଟିଯାଇଥିଲା ? ସମ୍ରାଟ ଚିନ୍ତିତ ହୋଇପଡ଼ିଲେ ।

ସମ୍ରାଟ୍ ନିଜ ରାଣୀଙ୍କ ଆଗରେ ନତହେବାପାଇଁ ବାଧ୍ୟ ହେଲେ । ତାଙ୍କୁ ନିଜ ଆଡ଼କୁ ଚାଲିବା ଦେଖି ରାଣୀ ରାସ୍ତ ମୁବାରକ ଓ ତା'ର ସାଥୀମାନଙ୍କୁ ମୁକ୍ତକରିଦେବା ପାଇଁ ଅନୁରୋଧ କଲେ । ବିଦ୍ରୋହୀମାନଙ୍କୁ ନିଜର ଇଚ୍ଛାନୁଯାୟୀ ଖଲାସ କରିଦେବା କ୍ଷମତା ସମ୍ରାଟଙ୍କ ହାତରେ ନଥିଲା; କେବଳ ଦଣ୍ଡସଭାହିଁ ଏଇ ନିଷ୍ପତ୍ତି ନେଇପାରିବ । ବିଦ୍ରୋହୀ ଓ ଗୁପ୍ତଚରମାନେ ଦେଶର ଶତ୍ରୁ । ବିଦ୍ରୋହୀମାନଙ୍କୁ ଛାଡ଼ିଦେବାକୁ ହେଲେ ପ୍ରମାଣ ଓ ଯୁକ୍ତିର ଆବଶ୍ୟକତା ଥିଲା । ରାଣୀଙ୍କ ପାଖରେ ଏଥିନିମନ୍ତେ କିଛିହେଲେ ଯୁକ୍ତି ନଥିଲା । ଯେଉଁଠି ଦସ୍ତାଗୀର ନିଜର ଭାଇକୁ ବିଦ୍ରୋହୀ ବୋଲି କହୁଥିଲା, ସେଇଠି ଅବା ତାକୁ କିଭଳି ଭାବରେ ଭୁଲ୍ ବୋଲି ସାବ୍ୟସ୍ତ କରାଯାଇପାରିଥାଆନ୍ତା ।

ନିର୍ଣ୍ଣୟ ଅତି ସାଂଘାତିକ ଥିଲା । ସମ୍ରାଟ୍ ଅକବରଙ୍କ ନିରପେକ୍ଷ ନ୍ୟାୟ ବିଚାର କଥା ସାରା ପୃଥିବୀରେ ପ୍ରସିଦ୍ଧ ଥିଲା । ସେ ବିନା କାରଣରେ ଅବା କାହାରିକୁ କେମିତି ଫାଶୀର ଆଦେଶ ଦେଇଦେବେ ? କାରଣ ଦସ୍ତାଗୀର ଦ୍ୱାରା ମଲକାଙ୍କୁ ସମ୍ରାଟଙ୍କ ଅନ୍ତଃପୁରକୁ ପହଞ୍ଚାଇବା କଥା କହି ଯୁକ୍ତି କରିବା ଅର୍ଥ ଥିଲା ନିଜ ଗୋଡ଼ରେ କୁରାଢ଼ି ମାରିବା । ସମ୍ରାଟ୍ କାଳେ ମଲକା ପ୍ରତି ଆସକ୍ତ ହୋଇଯାଇପାରନ୍ତି ?

ରାଣୀ ନିଜର ଦୁଃଖକଥା ନିଜର ଭାଇ ବୀରବଲଙ୍କୁ ଜଣାଇଲେ । ବୀରବଲ ପାଖରେ କେଉଁ ସମସ୍ୟାର ସମାଧାନ ପାଇଁ ଅବା ଉପାୟର ଅଭାବ ଥିଲା ? ସେ ବୁଝାଇଦେଲେ ଯେ ଜାଠ-ଜମିଦାରମାନଙ୍କ ଭିତରେ ଭାଇ-ଭାଇକୁ ହତ୍ୟାକରିଦେବା ଅତି ସାଧାରଣ କଥା । ଇମିତି ବି ହୋଇଥାଇପାରେ ଯେ ନିଜର ଭାଇ ରାସ୍ତ ମୁବାରକକୁ ବିଦ୍ରୋହୀ ବୋଲି ପ୍ରମାଣିତ କରି ଦସ୍ତାଗୀର କୌଶଳରେ ତାକୁ ହତ୍ୟା କରିବା ପାଇଁ ଚେଷ୍ଟା କରୁଛି । ରାସ୍ତ ମୁବାରକ ଓ ତା'ର ଗ୍ରାମର ଉତ୍ତରାଧିକାରୀମାନଙ୍କ ମୃତ୍ୟୁପରେ ତାଙ୍କର ଧନସମ୍ପତ୍ତି ଓ ଗ୍ରାମର ମୁଖିଆର ପଦ ତାକୁହିଁ ମିଳିବାର ଥିଲା । ଏମିତି କୂଟବୁଦ୍ଧି ସମ୍ପନ୍ନ ମଣିଷ ଦସ୍ତାଗୀରକୁ ଫାଶୀ

ଦେବା ଯେଉଁଭଳି ଆବଶ୍ୟକ ଥିଲା, କୈମା ଓ ତା'ର ସାଥୀମାନଙ୍କୁ ମଧ୍ୟ ମୁକ୍ତ ଦେବା ସେଇଭଳି ସ୍ୱାଭାବିକ ଥିଲା ।

ସମ୍ରାଟଙ୍କୁ ଏଥିରୁ ବଳି ଆଉ କିଛି ଯୁକ୍ତିର ଆବଶ୍ୟକତା ନଥିଲା । ସେ ନିଜର ନିଷ୍ପତ୍ତି ଶୁଣାଇଦେଲେ ।

ଦସ୍ୟୁକୁ ଫାଶୀଦେବା ଆଗରୁ ତା'ର ଶେଷ ଅଭିଳାଷ କ'ଣ ବୋଲି ପଚରାଗଲା । ହେଲେ ଦସ୍ୟୁର ସମସ୍ତ ଅଭିଳାଷ ମରିସାରିଥିଲା । ଉଚ୍ଚ ପଦବୀର ଲୋଭ ଓ ପ୍ରତିଶୋଧର ଭାବନା ତା'ର ମୁଣ୍ଡଭିତରେ ଯେଉଁ ଝଡ଼ ସୃଷ୍ଟି କରିଥିଲା, ତାହା କ୍ରମଶଃ ଶାନ୍ତ ହୋଇ ଆସୁଥିଲା । ତାର ଅବା ଶେଷ ଅଭିଳାଷ ଆଉ କଣ ଥିଲା ! ସେ କୈମା ଓ ମଲିଙ୍କୁ ପାଖକୁ ଡକାଇ କୈମା ହାତରେ ମଲିଙ୍କର ହାତ ରଖିଦେଲା । ଏଇ ଦୃଶ୍ୟ ଦେଖି ଗ୍ରାମ୍ୟ ମୁବାରକର ପରିବାରରେ ଅନ୍ୟ ସମସ୍ତଙ୍କର ଆଖି ଜକେଇଆସିଲା । ଦସ୍ୟୁ ଆଖିରୁ ମଧ୍ୟ ଧାର ଧାର ଲୁହ ଗଡ଼ିବାକୁ ଲାଗିଲା । ବଡ଼ଭାଇଠାରୁ କ୍ଷମା ପ୍ରାର୍ଥନା କରି ସେ ଫାଶୀକାଠରେ ଝୁଲିପଡ଼ିଲା ।

ସେଇଦିନ ରାତିରେ ଯମୁନା ନଦୀକୂଳରେ କୈମା ଓ ମଲିଙ୍କ ପ୍ରଥମ ଥର ପାଇଁ ଏକାନ୍ତରେ ପରସ୍ପରକୁ ପାଇଲେ । ଜହ୍ନରାତି, ନିର୍ଜନ ନଦୀକୂଳ, ବହିଯାଉଥିବା ଶାନ୍ତ ଜଳଧାରା ଓ ଦସ୍ୟୁର ଶେଷସମୟର ପଶ୍ଚାତ୍ତାପ ତାଙ୍କର ସାନ୍ନିଧ୍ୟକୁ ଅଧିକ ଘନିଷ୍ଠ କରିଦେଇଥିଲା ।

କୈମା ମଲିଙ୍କୁ ନିଜର ଆଲିଙ୍ଗନ-ପାଶରେ ବାନ୍ଧିନେଲା ସମୟରେ ଖୁସିରେ ମଲିଙ୍କର ଆଖିରୁ ଲୁହର ଧାର ଗଡ଼ିଆସିଲା ।

---